# ପ୍ରେମ ତରଙ୍ଗିଣୀ

ପଣ୍ଡିତ ନୀଳକଣ୍ଠ ରଥ



ଷ୍ଟୁଡେଣ୍ଟସ୍ ଷ୍ଟୋର-ବ୍ରହ୍ମପୁର

Digitized by srujanika@gmail.com

କଳାହାଣ୍ଡି ବ୍ରଜମୋହନ ସାହିତ୍ୟ ସମିତିର ପୁରସ୍କାରପ୍ରାପ୍ତ

# ମାତୃପ୍ରେମ ତରଙ୍ଗିଣୀ

ଲେଖକଃ—

ପଣ୍ଡିତ ନୀଳକଣ୍ଠ ରଥ

ପ୍ରକାଶକ

ଷ୍ଟୁଡେଣ୍ଟସ୍ ଷ୍ଟୋର

ବ୍ରହ୍ମପୁର—କଟକ

୧୯୪୮

ମୂଲ୍ୟ ଏକଟଙ୍କା ଆଠଅଣା

Digitized by srujanika@gmail.com

ବ୍ରଜମୋହନ ସାହିତ୍ୟସମିତିର

କାବ୍ୟ ବିଚାରକ ମଣ୍ଡଳୀ—

**ପଣ୍ଡିତ ଗୋଦାବରୀଶ ମିଶ୍ର**

**ଶ୍ରୀଯୁକ୍ତ କାଳିନ୍ଦୀଚରଣ ପାଣିଗ୍ରାହୀ**

**ଶ୍ରୀଯୁକ୍ତ ଚିନ୍ତାମଣି ଆଚାର୍ଯ୍ୟ**

ପ୍ରଥମ ମୁଦ୍ରଣ

ଯୁଗ୍ମଟୀକାକାର—

**ପଣ୍ଡିତ ଭାଗୀରଥି ମିଶ୍ର ସାହିତ୍ୟାଚାର୍ଯ୍ୟ**

**ଭଞ୍ଜ ସାହିତ୍ୟ ପ୍ରବୀଣ ଶ୍ରୀ ମଦନମୋହନ ମହାପାତ୍ର**

Digitized by srujanika@gmail.com

# — ସମର୍ପଣ —

ବ୍ରଜମୋହନ ସାହିତ୍ୟ ସମିତିର ପ୍ରତିଷ୍ଠାତା

ସତ୍‌-ସାହିତ୍ୟ-ପ୍ରଚ୍ଛୃର-ରସିକ,

ସୁପ୍ରସିଦ୍ଧ ନାଗବଂଶାବତଂସ

କଳାହାଣ୍ଡି ଅଧୀଶ୍ୱର

ମାନନୀୟ ମହାରାଜା

**ଶ୍ରୀ ଶ୍ରୀ ଶ୍ରୀ ପ୍ରତାପ କେଶରୀ ଦେବଙ୍କ**

ଶ୍ରୀ କରକମଳରେ

ବାହୁଡ଼ା ଦଶମୀ
୧୯୪୮
ବ୍ରହ୍ମପୁର

ବିନୀତ
**ଗ୍ରନ୍ଥକାର**

Digitized by srujanika@gmail.com

# ନିଜକଥା

ଷୋଳ ବର୍ଷ ତଳର କଥା—

'ସୀତା ପ୍ରେମ ତରଙ୍ଗିଣୀର' ଜନ୍ମ—ଭୂଏ. ସ୍ଥା. ମଧୁପୁର ବାଁଙ୍କୀର ଗୋଟିଏ ପଲ୍ଲୀ କୁଟୀର କୋଣରେ । ଏକ ପାଖରେ ଗୋରୁ ଗୁହାଳ—ଅନ୍ୟ ପାଖରେ ମୋର କ୍ଷୁଦ୍ର ଶୟନ ମନ୍ଦର । ସେଇ ଛିଣ୍ଡା ମଇଳା କନ୍ଥା ଉପରେ ବସି ଗୋଟିଏ କ୍ଷୁଦ୍ର ଡବର ମିଞ୍ଜି ମିଞ୍ଜି ଆଲୋକରେ ଏହାର ପ୍ରଥମ ନଅ ଛାନ୍ଦ ନିର୍ବିଘ୍ନରେ ସରି ଯାଇଥିଲା ।

ମୋର ପଡ଼ୋଶୀ ପଣ୍ଡିତ ସଦାଶିବ ମହାପାତ୍ର କାବ୍ୟତୀର୍ଥ ପ୍ରଥମେ ଏଇ ଛଅ ଛାନ୍ଦ ଦେଖି ଗୋଟିଏ ଦୀର୍ଘ ନିଶ୍ୱାସ ତ୍ୟାଗ କରି କହିଥିଲେ—ତୁମେ ଭଞ୍ଜଙ୍କୁ ଆଧୁନିକ ଯୁଗରେ ଶିଖାଇବା ପାଇଁ ଚେଷ୍ଟା କଲ ବଥେ, ସତକଥା, କିନ୍ତୁ କଷ୍ଟ ପଡ଼ି ଏ ବହି ଶେଷ କରି ପାରିବ ତ ?

ଟିକିଏ ହସି ଦେଇ ଅଧୋବଦନରେ ଫେରିଲି ପଣ୍ଡିତ ମହାଶୟଙ୍କ ପାଖରୁ ।

ତା ପରେ ଯେତେବେଳେ ବ୍ରହ୍ମପୁର ଆସିଲି ଗୃହକରି ଉଦ୍ଦେଶ୍ୟରେ—ସେତେବେଳେ ମୋର ଏଇ ସଂପଦ କାବ୍ୟ, ନାଟକ, ଉପନ୍ୟାସ ଗୁଡ଼ିକୁ ଧରି ଆସିଲି ମୋ ପରିବାର ସହିତ ।

ଏବେ ଯେପରି ଶତାଧିକ ପାଣ୍ଡୁଲିପି ଆଲମାରିକାରେ ପଡ଼ି ରହିଛି—ସେଇପରି 'ସୀତା ପ୍ରେମ ତରଙ୍ଗିଣୀ' ପଡ଼ି ରହିଥିଲା । ଭାଗ୍ୟବଶତଃ ତାହା ସବୁ ଦେଖୁ ଦେଖୁ ପଚିଶି ଖଣ୍ଡ ପାଣ୍ଡୁଲିପି କୀଟ ମୁଖରେ ପଡ଼ିଛି । 'ସୀତା ପ୍ରେମ ତରଙ୍ଗିଣୀ' ଅର୍ଦ୍ଧମୃତ ଅବସ୍ଥାରେ ରହିଛି ।

ଏ ହେଉଛି ବ୍ରହ୍ମପୁର'ଗ୍ରାମ ଦେବତା'ପାହାରେ ଥିବା ବେଳର ଘଟନା । ସେଇଠାରେ ହିଁ ଏ ଗ୍ରନ୍ଥର ପୂର୍ଣ୍ଣାହୁତି ।

Digitized by srujanika@gmail.com

ସୁଯୋଗ ବଶତଃ ଏହା କଳାହାଣ୍ଡି କାବ୍ୟ ପ୍ରତିଯୋଗିତାକୁ ପ୍ରେରିତ ହେଲା । ବିଚାରକ ମଣ୍ଡଳୀ ଏହାକୁ ସର୍ବ ପ୍ରଥମ ବୋଲି ମତ ବ୍ୟକ୍ତ କଲେ । ସେଥିଲାଗି ସେମାନଙ୍କୁ ହୃଦୟର ଗଭୀର କୃତଜ୍ଞତା ନ ଜଣାଇ ରହି ପାରୁନାହିଁ ।

କଳାହାଣ୍ଡିର ଦାନଶୀଳ ମହାରାଜା, ବ୍ରଜମୋହନ ସାହିତ୍ୟ ସମିତିର ସଭାପତି ଶ୍ରୀଶ୍ରୀ ପ୍ରତାପ କେଶରୀ ଦେବ ମହୋଦୟ ଏଥିଲାଗି ଏକ ସହସ୍ର ମୁଦ୍ରା ପାରିତୋଷିକ ପ୍ରଦାନ କରି ଯଥେଷ୍ଟ ହୃଦୟବତ୍ତାର ପରିଚୟ ଦେଇଛନ୍ତି । ସେଥିଲାଗି ମହାରାଜା ତଥା ରାଜପରିବାର ବର୍ଗଙ୍କ ମଙ୍ଗଳ କାମନା ମୋ ଜୀବନର ଏକ ମାତ୍ର ଅଙ୍ଗ ହୋଇରହିଛି ।

ଗୁରୁକଳ୍ପ ପଣ୍ଡିତ ରଘୁନାଥ ଶାସ୍ତ୍ରୀ, ପ୍ରୀତିବନ୍ଧୁ ପଣ୍ଡିତ ବୈଦ୍ୟନାଥ ଆଚାର୍ଯ୍ୟ, ଆପ୍ତସଖା ପଣ୍ଡିତ ଭାଗୀରଥି ମିଶ୍ର ସାହିତ୍ୟାଚାର୍ଯ୍ୟ ଓ ଭକ୍ତ ସାହିତ୍ୟ ପ୍ରବୀଣ ଶ୍ରୀମାନ୍ ମଦନମୋହନ ମହାପାତ୍ର ଏ ଗ୍ରନ୍ଥ ସଂଶୋଧନ ଓ ସଂଯୋଜନରେ ଯଥେଷ୍ଟ ଉପଦେଶ ଓ ସୂଚନା ଦେଇ ମୋତେ ସମଧିକ ସ୍ନେହ ପାଶରେ ଆବଦ୍ଧ କରି ରଖିଛନ୍ତି । ବସ୍ତୁତଃ ସେମାନଙ୍କର ଏ ଋଣ ବରାବର ଅପରିଶୋଧ୍ୟ ହୋଇ ରହିବ ।

ପରିଶେଷରେ ଏ କାଗଜ ଦୁର୍ଭିକ୍ଷ ବେଳେ ଏଭଳି ଗୋଟିଏ ବିଶାଳ ଗ୍ରନ୍ଥର ମୁଦ୍ରଣ ଭାର ବହନ କରି ଷ୍ଟୁଡେଣ୍ଟସ୍ ଷ୍ଟୋର କର୍ତ୍ତୃପକ୍ଷଗଣ ମହୋଦାର ଗୁଣଗ୍ରାହକତାର ଯଥେଷ୍ଟ ପରିଚୟ ଦେଇଛନ୍ତି ।

ପ୍ରାଚୀନ ଓ ଅର୍ବାଚୀନ ଉଭୟ ସାହିତ୍ୟକୁ ଆଦର୍ଶରୂପେ ରଖି 'ସୀତା ପ୍ରେମ ତରଙ୍ଗିଣୀ' ଯେ ଲେଖା ହୋଇଛି ତାହା ଭଲ କି ଭେଲ ସୁଧୀବର୍ଗ ବିଚାର କରିବାକୁ ରହିଲା ।

**ଗ୍ରନ୍ଥକାର**

Digitized by srujanika@gmail.com

# ଗ୍ରନ୍ଥ ସୂଚନା

ସଂସ୍କୃତରେ ମତ ଅତ କୃପାସିନ୍ଧୁ ବପ
ଶୋଣ୍ଡୀସ୍ୱ କୁଳ ଗୌରବ ପଣ୍ଡିତ ପ୍ରଦୀପ ।
ସିନ୍ଧୁସୁତ ସମ ତାଙ୍କ ଅଙ୍କ-ଆକାଶରେ
ସମ୍ଭବିଲେ ପିତା ପୁରୁଷୋତ୍ତମ ସାଦରେ ।
ସୁଧୀ ଚୂଡ଼ାମଣି ଦଯ୍ୟାନିଧି ମୋ ଅଗ୍ରଜ
ସାନ ହରିହର ଯେ ମାତୁଳ କୁଳେ ପୂଜ୍ୟ ।
ଶ୍ରୀଚନ୍ଦନ ନରନାଥ ପଦ୍ମନାଭ ବୀର
ଶାସନ ସ୍ଥାପିତ ନାମ ପଦ୍ମନାଭ ପୁର ।
ସ୍ଥିତ ସିଦ୍ଧରୂପ ତପୀ ଜମଦଗ୍ନି ଫଳେ
ସୁବଖ୍ୟାତ ରୁଶକ ଶିଖରୀ ଧରାତଳେ ।
ସଦା କଳରବରେ ତଟିନୀ କୁଳେଶ୍ୱରୀ
ଶୁର ବୀର ଗୀତ ଗାଏ ରେଣୁକା ସୁନ୍ଦରୀ ।
ସେ ଶୈଳ ଦକ୍ଷିଣ ଦଗରେ ଅବସ୍ଥାନ
ସୁପଣ୍ଡିତେ ପାଠପୁର ବୋଲି ମୋର ଗ୍ରାମ ।
ଶିଶୁଦିନୁ ସାହିତ୍ୟ ସଙ୍ଗୀତ ରସ ପାନେ
ସଦା ଆସକତ ରଘୁନାଥ ପଦଧ୍ୟାନେ ।
ଶତ ଶତ ହୋଇ ଦଶଠାରୁ ହେବ ବେଶୀ
ସଂଖ୍ୟାରେ କବିତା, ଗାଥା, କାବ୍ୟ ରାଶିରାଶି ।
ସୁଧୀ ନେତ୍ରଗୋଚର ନ ହୁଏ କେତେବେଳେ
ଶ୍ୟାମଳ କୋମଳ ରାମ କୃପା ଅଛି ତଳେ ।
ସୀତା ପ୍ରେମ ତରଙ୍ଗିଣୀ ସୁଧୀଗଣେ ମୋର
ସାର କଲି ଯାହା ତୁମ୍ଭ ପଦେ ନମସ୍କାର ।
ସ୍ନେହେ ନମେ କାନ୍ତକବି ଶ୍ରୀ ଗୋଦାବରୀଶ
ସାହିତ୍ୟ ରଥୀ କାଳନ୍ଦୀ ଚରଣ-ହାରସ ।

Digitized by srujanika@gmail.com

ସୁପଣ୍ଡିତ ଶିରୋମଣି ଅଗ୍ରଣୀ, ନମସ୍ତେ
ସୁକଲ୍ୟାଣ କର ଦୀନ ହୀନଙ୍କୁ ସମସ୍ତେ ।
ସୁଚରିତସମ ଦାନୀ ବୀରକୁଳ-ହୀର
ସୁବିଜ୍ଞ ବିବେକବନ୍ତ ନୃପତି-ମିହିର ।
ସୁବିଦିତ ନାଗବଂଶ କୌସ୍ତୁଭ ପରି ତ
ଶ୍ରୀ ପ୍ରତାପ କେଶରୀ ଯେ କଳାହାଣ୍ଡି ନାଥ ।
ସହସ୍ର ମୁଦ୍ରାଟି ପାରିତୋଷିକ ପ୍ରଦାନ
ସୁଚେଷ୍ଟରହ ଦୀର୍ଘଜୀବୀ ଲଭି ଧନ ଧାନ୍ୟ ।
ସୁଆଶିଷ ଏତିକି ନିତାପ ପୀଡ଼ା ହେଉ
ସଦା ମନୋହାରେ ଯୁବରାଜଗଣ ଦାଉ !
ସୁରତରେ ମାଦମତମୋହନାଏ ଦେବ
ସଦା କରୁଥାନ୍ତୁ ଅଳି ଚରଣ ରାଜୀବ ।
ସୁବେଦୀ ବ୍ରାହ୍ମଣେ ତବ ଦାନ ପୂତ କର
ସମ୍ମୁରେ କରନ୍ତୁ ଅର୍ଦ୍ଧ ମାଗି ନିରନ୍ତର ।
ସୁନାସୀର ସୁଧର୍ମା ମୋହନୀ ସୁରବାଳା
ସଙ୍ଗୀତେ ଗାଆନ୍ତୁ ତବ କୀର୍ତ୍ତି ବହୁଳା ।
ଶରୀର ମୋ ଥିବ ଯେତେ ଦିନ ଧରାତଳେ
ସୁମରିବି ରାତ୍ରେ ତବ ନାମ କୁତୂହଳେ ।
ସୁଦିନ ଆଣିଛ ମୋର ମୁଁ ଅତି ସୁଦୀନ
ଶ୍ୟାମଳ ସୁନ୍ଦର ରାମ ସୀତା ହୃଦ ଧନ ।
ସନାତନ ଶାଶ୍ବତ ହେ ଶଙ୍କର ତାରକ
ସୁଗ୍ରୀବ ବରଦ ନାଥ ଶକ୍ତି ପ୍ରକାଶକ ।
ସ୍ମରି ସ୍ମରି ହେଉ ମୋର ଦିନ ଅବସାନ
ଶ୍ରୀରାମ ତାରକ ମନ୍ତ୍ର ଦିଅ ଏହି ଦାନ ।

---

Digitized by srujanika@gmail.com

# ସୀତା ପ୍ରେମ ତରଙ୍ଗିଣୀ

## ସର୍ଗ ଏକ

ଶ୍ରୀଗ-ମଙ୍ଗଳ

**—ମଙ୍ଗଳାଚରଣ—**

ସୁମନେ ବନ୍ଦଇ ଦୀନବାନ୍ଧବ ହେ ହର
ସଦା କମଳାନନ୍ଦକ ତମରଟକେ ହର । ୧ ।

---

**— ସୁହୃଦାନନ୍ଦ-ତରଣୀ ଟୀକା—**

ସ୍ମରି ସୀତା, ଶିତାଂଶୁବଦନ ରଘୁନାଥ
ସୁହୃଦ ବୋଧନେ ସତେ ହୋଇବ ସମର୍ଥ ?
ସୀତା ପ୍ରେମ ତରଙ୍ଗିଣୀ ସୁପ୍ରକାଶ ଅଶେ
ସୁହୃଦାନନ୍ଦ-ତରଣୀ ଟୀକା ପରକାଶେ ।

ନିର୍ବିଘ୍ନରେ ଗ୍ରନ୍ଥର ପରିସମାପ୍ତି ହେବା ସକାଶେ ଗ୍ରନ୍ଥକାର କାବ୍ୟର ପ୍ରଥମରେ ପ୍ରଧାନ ନାୟକ ବିଷ୍ଣୁ ବା ରାମ ଓ ସେ ସୂର୍ଯ୍ୟବଂଶୀୟ ଥିବା ହେତୁ ସୂର୍ଯ୍ୟ ଏବଂ ରାମତାରକ ମନ୍ତ୍ରର ପ୍ରଧାନ ଉପାସକ ଭାବରେ ଶିବଙ୍କୁ ଦ୍ଵିବିଧାର୍ଥରେ ନମସ୍କାର କରି କହୁ ଅଛନ୍ତି—

୧—**ବିଷ୍ଣୁପକ୍ଷେ**—ଦୀନବାନ୍ଧବ (ଦୀନବନ୍ଧୁ) ସଦା (ସର୍ବଦା ବା ସବୁ କାଳରେ) ଯେ କମଳା (ଲକ୍ଷ୍ମୀ) ତାହାଙ୍କର ଆନନ୍ଦକ (ଆନନ୍ଦ ଦାୟକ) କମ୍ବା ସତ୍ (ସଜ୍ଜନ) ଅ (ବ୍ରହ୍ମା) କମଳା (ଲକ୍ଷ୍ମୀ) ଏମାନଙ୍କର

Digitized by srujanika@gmail.com

ସୁଖେ ବୈନତେୟ ତୁମ୍ଭ ଅଗ୍ରତରେ ସ୍ଥିତ
ସଦାକେ ଅନନ୍ତ ଅଙ୍କେ ନିତ୍ୟ ବିଲସିତ । ୨୧

ଆନନ୍ଦକ (ଆନନ୍ଦଦାୟକ) ଅଟନ୍ତି । ପୁଣି ତମ (ବାମ୍ଭ) ତାହାକୁ ଚକ୍ରେ (ଚକ୍ରଦ୍ୱାରା) ହର (ହରଣକାରୀ) ଏପରି ଅଟ ହେ ହରି (ବିଷ୍ଣୁ ବା ରାମ) ତୁମ୍ଭଙ୍କୁ ସୁମନେ (ଉତ୍ତମ ମନରେ) ବନ୍ଦଇ (ବନ୍ଦନା କରେ) ।

**ସୂର୍ଯ୍ୟପକ୍ଷେ**—ଦିନବାନ୍ଧବ (ଦିବସବନ୍ଧୁ) ସଦା (ସବୁବେଳେ) କମଳ (ପଦ୍ମ) ଆନନ୍ଦକ (ପ୍ରଫୁଲ୍ଲକର୍ତ୍ତା); ପୁଣି ତମଚକ୍ରେ (ଅନ୍ଧକାର ସମୂହକୁ) ହର (ନାଶ କର ବା ହରଣକାରୀ) ଅଟ ହେ ହରି (ସୂର୍ଯ୍ୟ) ତୁମ୍ଭଙ୍କୁ ସୁମନେ (ପୁଷ୍ପାଞ୍ଜଳି ଦେବା ଦ୍ୱାରା) ବନ୍ଦଇ(ବନ୍ଦନା କରେ) ।

**ଶିବପକ୍ଷେ**—ଦୀନବାନ୍ଧବ (ଶ୍ମଶାନ ବନ୍ଧୁ-ଦୀନ ବ୍ୟାଘ୍ରଚର୍ମାବରେ ଦୁଃଖେ ଶ୍ମଶାନେଚ ପ୍ରୟୋଜନେ ଇତି ବଚନ) ସଦା(ସର୍ବଦା)କମଳ (ମୃଗ; ପରଶୁ ମୃଗବରାଭୀତି ହସ୍ତଂ ପ୍ରସନ୍ନଂ ଇତିଧ୍ୟାନଂ) ଆନନ୍ଦକ (ପ୍ରଫୁଲ୍ଲକାରୀ-ପଶୁପତି ଏହି ନାମ ହେତୁ) ତମ (ଅଜ୍ଞାନ) ଚକ୍ରେ (ସମୂହକୁ) ଯେ ହର (ହରଣକାରୀ); ଅଥବା ତମଚନ୍ଦ୍ର (ତମୋଗୁଣଗ୍ରହଙ୍କର ଧାମ) ଇ (କନ୍ଦର୍ପ ଇକାର ଉଚ୍ୟତେ କାମ) ତା ପ୍ରତି ହର (ଯମ-ଯମା ଗୀଲେନ୍ଦ୍ର ଚନ୍ଦ୍ରାର୍କ ବହ୍ନି ସିଂହାସୁ ବାଜିଷୁ) ତୁଲ୍ୟ ଅଟନ୍ତି ଏ ପରି ଯେ ହର (ହେ ଶଙ୍କର) ତୁମ୍ଭଙ୍କୁ ସୁମନେ (ଉତ୍ତମ ମନରେ) ବନ୍ଦଇ (ବନ୍ଦନା କରେ) ।

୨—**ବିଷ୍ଣୁପକ୍ଷେ**—ସୁଖେ (ସନ୍ତୋଷରେ) ବୈନତେୟ (ଗରୁଡ଼)ତୁମ୍ଭ ଅଗ୍ରତରେ (ଛାମୁରେ) ସ୍ଥିତ ଅଟନ୍ତି । ନିତ୍ୟ (ସବୁକାଳରେ) ଯେ ଅନନ୍ତ ଅଙ୍କେ (ଶେଷ ନାଗଙ୍କ କୋଳରେ) ବିଲସିତ (ବିଳାସଯୁକ୍ତ ବା ବିଳାସଶୀଳ) ହୋଇଛନ୍ତି । ଏ କଥା ସ୍ୱହାଙ୍କ ଅଟେ (ସର୍ବ-ଜନ-ବିଦିତ ଅଟେ) ଅଥବା ଯେ ଅନନ୍ତ (ଶେଷଦେବ)ଙ୍କ ସଙ୍ଗ ଅଟନ୍ତି-ଅର୍ଥାତ୍ ଶେଷ ଓ ନୃସିଂହ, ରାମ ଲକ୍ଷ୍ମଣ, କୃଷ୍ଣ ବଳରାମ ରୂପ ଧାରଣ କରିଅଛନ୍ତି ଯେ ହରି ତାହାଙ୍କୁ ବନ୍ଦନା କରୁଅଛି ।



Digitized by srujanika@gmail.com

ସୁବିଦିତ କାଲେ କାଳେ ତୋ ମୂର୍ତ୍ତି ଶ୍ରେୟତ
ଶତ ନିଶାଚର ଦର୍ପ ନାଶି କରୁ ହିତ । ୩ ।

**ସୂର୍ଯ୍ୟପକ୍ଷ**—ସୁ (ଉତ୍ତମ) ଖେ (ଆକାଶରେ) ବୈନତେୟ (ଅରୁଣ) ତୁମ୍ଭ ଅଗ୍ରତରେ (ସମ୍ମୁଖରେ) ସ୍ଥିତି (ପ୍ରକାଶିତ) । ପୁଣି ଆପଣ ଅନନ୍ତ ଅଙ୍କରେ (ଆକାଶରେ) ସହଜେ (ଅକ୍ଳେଶରେ) ବିଳସିତ(କ୍ରୀଡ଼ା ପରାୟଣ) ହୋଇଅଛ । ଏ ପରି ଅଟ ହେ ସୂର୍ଯ୍ୟ ତୁମ୍ଭଙ୍କୁ ବନ୍ଦଇ (ବନ୍ଦନା) କରୁଅଛି ।

**ଶିବପକ୍ଷ**—ବୈ (ନିଶ୍ଚୟରେ) ନତେ (ନମ୍ରଭାବରେ) ଯ (ଯମ—ଯୋ ଯମ କଥିତା ପ୍ରାଜ୍ଞୈଃ—ଏକାକ୍ଷର) ଯେ ସୁଖେ (ସନ୍ତୋଷରେ) ତୁମ୍ଭ ଅଗ୍ରତରେ ( ସମ୍ମୁଖରେ ) ସ୍ଥିତି (ପ୍ରକାଶିତ—ଅର୍ଥାତ୍ ଏଠାରେ ମାର୍କଣ୍ଡେୟଙ୍କୁ ରକ୍ଷା କରିବା ସମୟ କଥା କୁହାଯାଉଛି । ମୃତ୍ୟୁଞ୍ଜୟ ହୋଇ ଥିବାରୁ) । ସହଜରେ (ଅକ୍ଳେଶରେ) ଅନନ୍ତ (ଶେଷ ନାଗ) ଅଙ୍କେ (ଶରୀରରେ) ବିଳସିତ (ବିଳାସଯୁକ୍ତ; ବାହୁଟି ଓ ଯଜ୍ଞୋପବୀତ ରୂପେ) ଏମନ୍ତ ଯେ ଶିବ ତାହାଙ୍କୁ ବନ୍ଦନା କରୁଅଛି ।

୩—**ବିଷ୍ଣୁପକ୍ଷେ**—କାଳେ କାଳେ (ସବୁ ସମୟରେ) ତୋ ମୂର୍ତ୍ତି ଶ୍ରେୟତ (ମନୁଷ୍ୟଶ୍ରେଷ୍ଠ-ଶ୍ରେୟତୋ ମନୁଷ୍ୟପୁଙ୍ଗବଃ) ଏହା ସୁବିଦିତ (ଉତ୍ତମରୂପେ ଜଣା ଯାଏ, ସୁବିଖ୍ୟାତ) ଅଟେ । ତୁ ଶତ ନିଶାଚର (ଅନେକ ରାକ୍ଷସମାନଙ୍କର) ଦର୍ପ (ଗର୍ବ) ନାଶି (ନାଶକରି) ଜଗତର (ପୃଥିବୀ ବା ସଂସାରର) ହିତ (ମଙ୍ଗଳ) କରୁ ।

**ସୂର୍ଯ୍ୟପକ୍ଷେ**—କାଳେ କାଳେ ( ପ୍ରତି କାଳରେ ଅର୍ଥାତ୍ ଉଦୟାସ୍ତ ସମୟରେ) ତୋ ମୂର୍ତ୍ତି ଶ୍ରେୟତ (ଲୋହିତବର୍ଣ୍ଣ) ଧାରଣ କରି ସୁବିଦିତ (ପ୍ରକାଶିତ) ହୁଏ । ନିଶାଚର (ପେଚକ ଉଲୂକାଦି ପକ୍ଷୀଙ୍କର ମାନଙ୍କର) ଦର୍ପ (ଗର୍ବ ଅର୍ଥାତ୍ ଅଶୁଭ ଶବ୍ଦ) ନାଶି (ନାଶ କରି) ଜଗତର ହିତ (ମଙ୍ଗଳ) କରୁ । ଏହା ସତ (ପ୍ରକୃତ) କଥା ।

—ତିନି—

Digitized by srujanika@gmail.com

ସତ୍ତ୍ୱ ରଜତମେ ତୁ ତ୍ରିଗୁଣ ମୂର୍ତ୍ତିଧର
ଶରଣ ସମ୍ଭାଳି ରକ୍ଷ ଧରଣୀ ଉଦ୍ଧର । ୪ ।
ସତୀ ସୀତାପତି ଜୟ ରତୀଶ-ନାଶନ
ସେବ୍ୟ ତ୍ରିପୁରର ନର ଅମର ବନ୍ଦନ । ୫ ।

---

**ଶିବପକ୍ଷେ**—କାଳେ (ଯଥା ସମୟରେ) କାଳେ (ନୀଳବର୍ଣ୍ଣରେ-କାଳ ଶ୍ୟାମଳ ମେଚକୌ ଇତି ଅମରଃ) ଶୋହିତ(ରକ୍ତବର୍ଣ୍ଣ ମିଶ୍ରିତ) ଏମନ୍ତ ଯେ ତୋର ମୂର୍ତ୍ତି ତାହା ସୁବନ୍ଦିତ (ସୁପ୍ରସିଦ୍ଧ) ଅର୍ଥାତ୍ (ଧୂର୍ଜଟି ନୀଳ ଲୋହିତଃ) ଶତ (ଅପରିମିତ) ନିଶାଚର (ରାକ୍ଷସ) ସେମାନଙ୍କର ଦର୍ପ (ଗର୍ବ) ନାଶି (କ୍ଷୟ ବା ସଂହାର କରି) ଜଗତର ହିତ (ମଙ୍ଗଳ) ବିଧାନ କରୁ ।

ଅଥବା କାଳେ କାଳେ (ପ୍ରତି ପ୍ରଳୟକାଳରେ) ତୋ ମୂର୍ତ୍ତି ଶୋହିତ (ରକ୍ତ ବର୍ଣ୍ଣ ବଶିଷ୍ଟ-ଅର୍ଥାତ୍ କ୍ରୋଧାଘୂର୍ଣିତ ଶରୀର ଏହି ଭାବ) କୋଲ-ସୁବନ୍ଦିତ (ସୁବଖ୍ୟାତ) ହୋଇଅଛି । ଅପରିମିତ ରାକ୍ଷସମାନଙ୍କର ଦର୍ପ ନାଶ କରି ତୁ ଜଗତର ମଙ୍ଗଳ ବିଧାନ କରୁ ।

୪—ହେ ବିଷ୍ଣୁ, ହେ ଶିବ, ହେ ସୂର୍ଯ୍ୟ ତୁମ୍ଭେମାନେ ସତ୍ତ୍ୱ, ରଜ, ତମଗୁଣ ଅନୁସାରେ ଯଥାକ୍ରମେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଭେଦରେ ଶରଣ ସମ୍ଭାଳି ଧରଣୀ (ପୃଥିବୀ)କୁ ଉଦ୍ଧରି (ଉଦ୍ଧାର କରି) ରକ୍ଷା କର ।

ପାଞ୍ଚ ପଦଠାରୁ ଚଉଦ ପଦ ପର୍ଯ୍ୟନ୍ତ ଦ୍ୱିବର୍ଥାର୍ଥ; କାବ୍ୟର ନାୟକ ଶ୍ରୀରାମଚନ୍ଦ୍ର ଓ ରାମତାରକ ମନ୍ତ୍ରର ଏକପାନ୍ତ ସାଧକ ପରମଯୋଗୀ ଶିବଙ୍କୁ ସ୍ତୁତି କରା ଯାଇଅଛି —

୫—**ଶ୍ରୀରାମ ପକ୍ଷେ**—ସତୀ ସୀତା ପତି ( ସାଧ୍ୱୀ ସୀତାଙ୍କ ସ୍ୱାମୀ) ରତୀଶ-ନାଶନ (କନ୍ଦର୍ପଠାରୁ ଅଧିକ ସୁନ୍ଦର ବା କୋଟି କନ୍ଦର୍ପ



Digitized by srujanika@gmail.com

ସାମନ୍ତ ଲକ୍ଷଣଯୁକ୍ତ ଜନକ-ତୋଷିତ
ସଦା ଅଜଗବଧର ଧରଣୀ ପାଳତ । ୭ ।

ସ୍ୱନ୍ଦରଙ୍ଗ) ଯେ ତ୍ରିପୁରର ( ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନି ଲୋକର ) ସେବ୍ୟ ( ସେବା ଯୋଗ୍ୟ ) ପୁଣି ଯେ ନର ( ମନୁଷ୍ୟ ) ଅମର (ଦେବତାଙ୍କ ଦ୍ୱାରା ବନ୍ଦନୀୟ ଅଟନ୍ତି ।

**ଶିବପକ୍ଷେ**—ସତୀ (ପାର୍ବତୀ) ସୀତା (ଗଙ୍ଗା) ଯାହାଙ୍କର ପତି (ସ୍ୱାମୀ) ଅଟନ୍ତି । ପୁଣି ଯେ ରତୀଶ (କନ୍ଦର୍ପ) ତାହାର ନାଶନ (ଭସ୍ମକର୍ତ୍ତା) ଅଟନ୍ତି । ଯେ ସେବ୍ୟ (ପୂଜ୍ୟ ବା ସେବା ଯୋଗ୍ୟ) ଅଟନ୍ତି । ପୁଣି ତ୍ରିପୁର (ତ୍ରିପୁରାସୁର) ତାହା ପକ୍ଷେ ର (ଅଗ୍ନିତୁଲ୍ୟ) ଅଟନ୍ତି । ପୁଣି ନର(ମନୁଷ୍ୟ) ଅମର (ଦେବତା) ଏମାନଙ୍କର ବନ୍ଦନୀୟ ଅଟନ୍ତି ।

୭—**ଶ୍ରୀରାମ ପକ୍ଷେ**—ଯେ ସାମନ୍ତ ଲକ୍ଷଣ ଯୁକ୍ତ (ବତିଶ ଲକ୍ଷଣ ବା ରାଜଚିହ୍ନ ଯୁକ୍ତ) ଅଥବା ସାମନ୍ତ (ଶୋଭାବନ୍ତ) ଏବଂ ଯେ ଲକ୍ଷଣ (ଲକ୍ଷ୍ମଣ) ତାହାଙ୍କ ସହିତ । ଜନକ (ଦଶରଥ ଓ ଜନକ ମହର୍ଷି) ଏମାନଙ୍କର ତୋଷିତ (ଆନନ୍ଦଦାୟକ) ଅଟନ୍ତି । ଯେ ଅଜଗବଧର (ଶିବଧନୁ ଧାରଣକାରୀ) ଯେ ସ୍ୱୟଂ ସଦା (ସବୁ କାଳରେ) ଧରଣୀ-ପାଳତ (ପୃଥିବୀର ପାଳକ) ଅର୍ଥାତ୍ ଯାହାଙ୍କର ଶାସନରେ ପୃଥିବୀ ଆଦର୍ଶ ରାମରାଜ୍ୟ ସୁଖ ଅନୁଭବ କରିଅଛି ।

**ଶିବପକ୍ଷେ**—ସାମନ୍ତ-ଲକ୍ଷଣ-ଯୁକ୍ତ-ଜନକ (ଶ୍ରୀମନ୍ତ ଲକ୍ଷଣ ପୂର୍ଣ୍ଣ ଲୋକମାନଙ୍କର) ତୋଷିତ (ତୋଷଦାତା) ଅଥବା ସାମନ୍ତ (ରାଜା) ଲକ୍ଷଣ ଯୁକ୍ତ (ତନ୍ତ୍ର) ଜନକ (ପିତା ଅଟନ୍ତି ଯାହାର ଅର୍ଥାତ୍ ବୃଷ-ପର୍ବତ; ଅବ ଲକ୍ଷିତଳକ୍ଷଣା) ଏମାନଙ୍କର ତୋଷିତ (ତୋଷଦାତା) ସଦା (ସବୁବେଳେ) ଯେ ଅଜଗବଧର (ପିନାକଧାରୀ) ଯେ ଧରଣୀ (ପୃଥିବୀ) ତାର ପାଳତ (ପାଳନକର୍ତ୍ତା-ଦୁଷ୍ଟନିଗ୍ରହ କରୁଛନ୍ତି) ।

—ପାଞ୍ଚ—

Digitized by srujanika@gmail.com

ସୁଲକ୍ଷଣା ସ୍ନେହୀ ହେ ଶିବଦ ରୁଦ୍ର ମୂର୍ତ୍ତି
ସାଗର ମନ୍ଥିଲ ସେତୁ ବନ୍ଧନ ସୁକୃତି । ୭ ।
ସୁନାଶୀର ଉତ୍ସୃଦ ହେ ସୁଖଦ ସଂସାରେ
ଶରଣ ପୋଦର ଧର ମଣ୍ଡନର ସାରେ । ୮ ।

---

୭—**ଶ୍ରୀରାମ ପକ୍ଷେ**—ସୁଲକ୍ଷଣା ସ୍ନେହୀ (ସୁଲକ୍ଷଣା ସୀତାଙ୍କଠାରେ ସ୍ନେହଯୁକ୍ତ) ହେ ଶିବଦ (ମଙ୍ଗଳଦାତା) ରୁଦ୍ର (ଭୀଷଣ) ମୂର୍ତ୍ତି (ରାକ୍ଷସ ବିନାଶ ଅର୍ଥରେ) ସେତୁ ବନ୍ଧନ ସୁକୃତି ( ଯେ ସେତୁ ବାନ୍ଧିବା ଦ୍ୱାରା ଉତ୍ତମ କାର୍ଯ୍ୟ ପ୍ରକାଶ କରି ) ସାଗର (ସମୁଦ୍ର) ତାହାକୁ ମନ୍ଥିଲ (ଦୁଇ ଭାଗ କଲ) ।

**ଶିବ ପକ୍ଷେ**—ସୁଲକ୍ଷଣା ସ୍ନେହୀ (ପାର୍ବତୀ ଓ ଗଙ୍ଗାଙ୍କଠାରେ ସ୍ନେହଯୁକ୍ତ) ହେ ଶିବଦ (ମଙ୍ଗଳପ୍ରଦ) ରୁଦ୍ର (ଯେ କି ରୁଦ୍ରନାମରେ ନାମିତ) ସାଗର (ଏଠାରେ କ୍ଷୀର ସମୁଦ୍ର) ମନ୍ଥିଲ (ମନ୍ଥନ କଲ, ଦେବାସୁରଙ୍କ ସହ) ପୁଣି ଯେ ସେତୁ (ଖେଚର ସାଧନ ବିଶେଷ) (ପଦାହାରଂ ଯୁକ୍ତ୍ୱା ପାଦଂ ମେକ ପାଦ ମଥ ସମାତ୍ରମ୍, ନ୍ୟସ୍ୟ ଶୀର୍ଷଂ ଭ୍ରୂଜ୍ୟୋଂ ଚ ସ୍କନ୍ଧ ଲେଲନ୍ଧ ସେତବଃ-ସାଧନ ସଂଗ୍ରହ) ତାହାର ବନ୍ଧନ (କିମ୍ବା ତାହା ନିର୍ବାହ କରିବାକୁ ହେବ ତାହାର ନିୟମ ବା ଖେଚର ସାଧନର ନିର୍ବାହକ) ଅଟନ୍ତି । ଏ ପରି ସୁକୃତି (ଉତ୍ତମ କାର୍ଯ୍ୟ ଯାହାଙ୍କର) ।

୮—**ଶ୍ରୀରାମ ପକ୍ଷେ**—ଯେ ସୁନାଶୀର (ଇନ୍ଦ୍ର) ଉତ୍ସୃଦ (ଇନ୍ଦ୍ର ନାଶକ; ରାବଣାଦ ରାକ୍ଷସ ନାଶଦ୍ୱାରା) ଯେ ସଂସାରେ (ପୃଥିବୀରେ) ଏକମାତ୍ର ସୁଖଦ (ସୁଖଦାୟକ) ଯେ ଶରଣପୋଦର (ଆଶ୍ରିତ-ବତ୍ସଳ) ଧର (ପର୍ବତ; ଶତ୍ରୁକୂଟାଦ) ତାର ମଣ୍ଡନ (ଅଳଙ୍କରଣ)ର ସାରେ (ଶ୍ରେଷ୍ଠ ରୂପେ) ବିଖ୍ୟାତ । ଏ ପଦ ମଧ୍ୟ ଶ୍ରୀକୃଷ୍ଣଙ୍କ ପ୍ରତି ଅର୍ଥ କରିଯାଇ ପାରିବ ।

—ଛ—

Digitized by srujanika@gmail.com

ଶୈଳ ଶିଖେ କାଳକାର ଦର୍ଶନେ ବହ୍ୱଳ
ସୁଅହ୍ଲାଦେ ସୁଗ୍ରୀବ ଅଦଙ୍କୁ କଲ କୋଳ । ୯ ।
ସନ୍ତାପ ହରଣ ତାରାପତର ସୁଦକ୍ଷ
ସହଜେ ପରଶୁରାମ ଶିକ୍ଷା ଦେବା ଲକ୍ଷ୍ୟ । ୧୦ ।

---

**ଶିବ ପକ୍ଷେ**—ଯେ ସୁ (ଉତ୍ତମ) କାଶୀର (ବୀର, ଜୟପୁର ଅଛକାଦ)ଙ୍କର ଉପ୍ସଦ (ବ୍ୟୁନ୍ଦାନକାରୀ) ଏହି କାରଣରୁ ସଂ (ମଙ୍ଗଳ-ସ୍ୱଶ୍ରେମ୍ଂ ଶଂ ଶିବଂ ଭଦ୍ରଂ କଲ୍ୟାଣଂ ମଙ୍ଗଳଂ ଶୁଭଂ)ସାରେ(ସମ୍ୟକ୍ଷ୍ମବରେ) ସୁଖଦ (ସୁଖଦାନକର୍ତ୍ତା) ଅଟନ୍ତି । ଯେ ଶରଣସୋଦର (ଅଗ୍ନିତବସ୍ତ୍ରକ) ଧର (ପର୍ବତ, କୈଳାସ) ତାର ମଣ୍ଡନ (ଅଳଂକରଣ) ରୂପେ ବିରାଜିତ ।

୯—**ଶ୍ରୀରାମ ପକ୍ଷେ**— ଯେ ଶୈଳଶିଖେ (ପର୍ବତ ଶିଖରରେ; ଅର୍ଥାତ୍ ଋଷ୍ୟମୂକ ବା ମାଲ୍ୟବନ୍ତ ଶିଖରରେ) କାଳକାର (ମେଘ ସମୂହର) ଦର୍ଶନେ (ଦେଖିବାରେ) ବହଳ (ବିରହ ତାପଯୁକ୍ତ) ହୋଇଥିଲେ । ପୁଣି ସୁଅହ୍ଲାଦେ (ଅତଶ୍ୱେହରେ) ଯେ ସୁଗ୍ରୀବାଦଙ୍କୁ (ସୁଗ୍ରୀବ ହନୁମାନ୍ ଓ ଜାମ୍ବୁବାନ୍ ପ୍ରଭୃତିଙ୍କୁ) କୋଳ କରିଥିଲେ ।

**ଶିବ ପକ୍ଷେ**—ଯେ ଶୈଳଶିଖେ (କୈଳାସ ପର୍ବତ ଶିଖରରେ) କାଳକା (ଦୁର୍ଗା ବା ପାର୍ବତୀ)ଙ୍କର ଦର୍ଶନରେ (ଦେଖିବାରେ) ବହଳ (ପ୍ରେମ ବହ୍ୱଳ) ହୋଇ ସୁଅହ୍ଲାଦେ (ଅତି ଆନନ୍ଦରେ) ସୁ (ଉତ୍ତମ) ଗ୍ରୀବାଦଙ୍କୁ (ଗ୍ରୀବାଦ ଅଙ୍ଗମାନଙ୍କୁ) କୋଳ କରିଥିଲେ ।

୧୦—**ଶ୍ରୀରାମ ପକ୍ଷେ**—ହେ ସୁଦକ୍ଷ (ହେ ମହାବଳଶାଳୀ) ତୁମ୍ଭେ ତାରାପତି (ସୁଗ୍ରୀବ)ଙ୍କର ସନ୍ତାପ (ଦୁଃଖ) ହରଣ (ହର୍ତ୍ତା ବା ନାଶକ) ଅଟ । ପରଶୁରାମଙ୍କୁ ଶିକ୍ଷା ଦେବା ତୁମ୍ଭର ଏକମାତ୍ର ଲକ୍ଷ୍ୟ ଥିଲା ।

**ଶିବ ପକ୍ଷେ**—ଯେ ତାରାପତି (ଚନ୍ଦ୍ର)ଙ୍କର ସନ୍ତାପ (ଦୁଃଖ) ହରଣ (ନାଶକରିବାରେ) ସୁଦକ୍ଷ (ଅତିବଳଶାଳୀ) ଅଟନ୍ତି । ଅଥବା ଅତି-



Digitized by srujanika@gmail.com

ସତତ କୁମୁଦ ରଙ୍ଗ ବର୍ଦ୍ଧନ ତପୂର
ସହଜେ ତ ପର ଚକ ତମସ ଭାସ୍କର । ୧୧ ।
ଶ୍ରୀନିଲୟ ସଦାଶିବ ତ୍ରିପୁରାରି ହନ୍ତା
ସଦା ବୃଷ ଧନୁ ଯୁତ ଅନାଦ କରତା । ୧୨ ।

---

କଳଙ୍କାଳୀ ଯେ ଚନ୍ଦ୍ର, ସେ ଯାହାଙ୍କର ସନ୍ତାପ ହରଣ (ବହ୍ଲାକାନାଶକ) ଅଟନ୍ତି । ପରଶୁରାମଙ୍କୁ ଧନୁର୍ବେଦ ଶିକ୍ଷା ଦେବା ଯାହାଙ୍କର ଲକ୍ଷ ଥିଲା ।

୧୧—**ଶ୍ରୀରାମ ପକ୍ଷେ**—ସତତ (ପ୍ରକୃତରେ) ଯେ କୁମୁଦ (କୁମୁଦ ନାମା ସେନାପତିର) ରଙ୍ଗ (ହର୍ଷ) ବର୍ଦ୍ଧନ (ବଢ଼ାଇବାରେ) ତତ୍ପର ଅଟନ୍ତି । ସହଜେ (ଅନାୟାସରେ) ଯେ ପର ଚକ୍ରତମସ (ଶତ୍ରୁ ସମୂହ ରୂପ ଅନ୍ଧକାରକୁ) ଭାସ୍କର (ସୂର୍ଯ୍ୟ) ଅଟନ୍ତି । ଅଥବା ସହଜେ ପର (ଶତ୍ରୁ) ଅଟେ ଚକ୍ର (ଚକ୍ରବାକ) ଯାହାଙ୍କର; ତ-କଷ୍ଟସ୍ୱାର୍ଥ ଅବ୍ୟୟ ।

**ଶିବ ପକ୍ଷେ**—ସତତ (ସବୁବେଳେ) କୁ (ପୃଥିବୀ) ମୁଦ (ଆନନ୍ଦ) ରଙ୍ଗ (ସୁନ୍ଦର ଭାବରେ) ବର୍ଦ୍ଧନ (ବଢ଼ାଇବାରେ) ତତ୍ପର ଅଟନ୍ତି । ସହଜେ ତ ଯେ ପରଚକ୍ର ତମସ ଭାସ୍କର (ଶତ୍ରୁ ସମୂହ ରୂପ ଅନ୍ଧକାରରେ ସୂର୍ଯ୍ୟ) ଅଟନ୍ତି ।

୧୨—**ଶ୍ରୀରାମ ପକ୍ଷେ**—ଶ୍ରୀନିଳୟ (ଶ୍ରୀନିବାସ ବା ଶ୍ରୀଧର) ଯେ ସଦା (ସବୁବେଳେ) ଶିବ (ମଙ୍ଗଳମୟ) ଅଟନ୍ତି । ଯେ ତ୍ରିପୁରାରି (ତିନି ପୁରର ଶତ୍ରୁ ରାବଣାଦିଙ୍କର) ହନ୍ତା (ବିନାଶକ) ଅଟନ୍ତି । ଅଥବା ଯେ ଶ୍ରୀଧର ଏବଂ ସବୁକାଳରେ ଅଶିବ (ଅମଙ୍ଗଳମୟ) ତ୍ରିପୁରାରି (ତିନି ଲୋକର ଶତ୍ରୁ ଅଟନ୍ତି ଯେ ରାବଣ କୁମ୍ଭକର୍ଣ୍ଣାଦି) ସେହିମାନଙ୍କର ହନ୍ତା (ବିନାଶକ) ଅଟନ୍ତି । ଯେ ସଦା (ସବୁବେଳେ) ବୃଷ (ଶ୍ରେଷ୍ଠ) ଧନୁର୍ଯୁତ (ଶାର୍ଙ୍ଗ ବା ବୈଷ୍ଣବ ଧନୁର୍ଯୁକ୍ତ) ଅଟନ୍ତି । ଯେ ଅନାଦ (ଅଦରହିତ) ପୁଣି ଯେ କରତା (ସଂସାରକର୍ତ୍ତା) ଅଟନ୍ତି ।



Digitized by srujanika@gmail.com

ଶୋଭିସ୍ଫକ୍ତ ବନ୍ଧୁ ଅଟେ ପାପ–ତମନାଶୀ
ସ୍ନେହଭରରେ ସାନୁମାନ ବିହାର ବିଳାସୀ । ୧୩ ।
ସୁମନେ ପ୍ରକୃତପୂଜ୍ୟ ସତ୍ୟସନ୍ଧଦେବ
ସେବେ ପଦେ ଗ୍ରନ୍ଥକର୍ତ୍ତା ଭୂସୁରବଲ୍ଲଭ । ୧୪ ।

---

**ଶିବ ପକ୍ଷେ**—ଯେ ଶ୍ରୀନୀଳସ୍ଫ (ବିଷଧାରକ, ଶ୍ରୀକଣ୍ଠଭ୍ରାତ) ଯେ ସଦା ଶିବ (ସର୍ବଦାମଙ୍ଗଳକାରୀ) ଯେ ତ୍ରିପୁରାରି (ତ୍ରିପୁରାସୁରର ଶତ୍ରୁ) ପୁଣି ହର୍ତ୍ତା (ପ୍ରଳୟକର୍ତ୍ତା) ଅଟନ୍ତି । ଯେ ସଦା (ସର୍ବଦା) ବୃଷ (ବୃଷଭ) ଧନୁ (ଅଜଗବ) ଯୁତ(ଯୁକ୍ତ) ଯେ ଅନାଦି (ଆଦିଶୂନ୍ୟ) କରତା (କାରଣ) ଅଟନ୍ତି ।

୧୩—**ଶ୍ରୀରାମ ପକ୍ଷେ**—ଅହେ ଶୋଭିସ୍ଫକ୍ତ (ସୁନ୍ଦର) ବନ୍ଧୁ (ଭ୍ରାତୃ) ହେ ପାପତମନାଶୀ (ପାପାନ୍ଧକାର ନାଶକର୍ତ୍ତା) ଯେ ସ୍ନେହଭରରେ (ଅତ୍ୟନ୍ତ ସହିତ) ସାନୁମାନ (ପର୍ବତ) ବିଳାସୀ (ବିଳାସକାରୀ, ପିତୃସତ୍ୟ ରକ୍ଷା ନିମିତ୍ତ ଯେ ପର୍ବତ ଓ ବଣରେ ବୁଲୁଥିଲେ) ।

**ଶିବ ପକ୍ଷେ**—ହେ ବନ୍ଧୁ (ବନ୍ଧୁ) ଶୋଭିସ୍ଫକ୍ତ (ସୁନ୍ଦର, ହରିହର ଏକ ଆତ୍ମା) ଅଥବା ହେ ବନ୍ଧୁ (ବନ୍ଧୁ) ଆ (ବ୍ରହ୍ମା ଅକାରେ ବାସୁଦେବ ସ୍ୟାଦାକାରନ୍ତୁ ପିତାମହଃ) ଶୋଭିସ୍ଫକ୍ତ (ସୁନ୍ଦର ଭାବରେ ମିଳିତ) ଯେ ସ୍ନେହଭରରେ (ପ୍ରେମରେ) ସାନୁମାନ ବିହାର (କୈଳାସ ପର୍ବତରେ ବିହାର) କରନ୍ତି । ପୁଣି ଯେ ବିଳାସୀ (ତାଣ୍ଡବନୃତ୍ୟକାରୀ) ଅଟନ୍ତି ।

୧୪—**ଶ୍ରୀରାମ ପକ୍ଷେ**—ଯେ ସୁମନେ (ପଣ୍ଡିତମାନଙ୍କ ଦ୍ୱାରା) ପ୍ରକୃତପୂଜ୍ୟ (ପ୍ରଜାମାନଙ୍କଦ୍ୱାରା ପୂଜିତ) ଯେ ସତ୍ୟସନ୍ଧ (ସତ୍ୟବ୍ରତ, ବା ସତ୍ୟପାଳକ) ହେ ଦେବ (ପ୍ରଭୁ) ତୁମ୍ଭ ପଦେ (ପଦତଳେ) ଗ୍ରନ୍ଥକର୍ତ୍ତା (ଗ୍ରନ୍ଥକାର) ଭୂସୁରବଲ୍ଲଭ (ବ୍ରାହ୍ମଣ ଶ୍ରେଷ୍ଠ) ସେବେ (ସେବାକରେ) ।

—ନଅ—

Digitized by srujanika@gmail.com

## ବୈଦଗ୍ଧ୍ୟବୋଧିକା—

ସବତା କବତା-କଞ୍ଜ ଭଞ୍ଜ ବୀରବର
ସୁଧାସମ ଯହିଁ ଗୀତ ଗାଇଲେ ସୁନ୍ଦର । ୧୫ ।
ସହସ୍ର ରଶ୍ମି ସଦୃଶ କବି ବଳଦେବ
ଶ୍ମଶାନତୁଳସୀ ଅଭିମନ୍ୟୁଙ୍କୁ କେ ଦେବ । ୧୬ ।
ଶିରୋମଣି କଳତୁଙ୍ଗା ହାସ୍ୟପ୍ରିୟ ଖଣ୍ଡ
ସୁବିଖ୍ୟାତ ଯା'ର ନାମ ଏ ଉତ୍କଳେ ଦଣ୍ଡ ।୧୭ ।
ସେହି ଯଦୁମଣି ପୂର୍ଣ୍ଣଚନ୍ଦ୍ର ଗୀତ ଭଣି
ଦୈଦେଶେ ଗାଇବା ହେତ ସାଧୁ ଏ ନମଣି । ୧୮ ।
ସହସ୍ର ଜ୍ୟୋତିଷ୍କ ଶୋଭା କଲେ ହେଁ ଅନନ୍ତ
ଶୂନ୍ୟ କ ହେବେ ଶୂନ୍ୟରୁ ତାରକା ସମସ୍ତ । ୧୯ ।
ସାଧବ ହେ ଏହି ଭାବ ବଳାନ୍ତ ମାନସେ
ସୀତା ପ୍ରେମ ତରଙ୍ଗିଣୀ ରଚନା ଲାଳସେ । ୨ ।

---

**ଶିବ ପକ୍ଷେ**—ସୁମନେ (ପୁଷ୍ପଦ୍ୱାରା), ପ୍ରକୃତ (ପାର୍ବତୀଙ୍କଦ୍ୱାରା) ପୂଜ୍ୟ (ପୂଜିତ) ଯେ ସତ୍ୟସନ୍ଧ (ସତ୍ୟରକ୍ଷାକାରୀ) ଅଥବା ସତୀ+ଅସନ୍ଧ ଅର୍ଥାତ୍ ପାର୍ବତୀ ଯାହାଙ୍କ ଅର୍ଦ୍ଧାଙ୍ଗିନୀ; ଏପରି ହେ ଦେବ (ମହାଦେବ) ତୁମ୍ଭ ପଦେ (ପାଦରେ) ଚନ୍ଦ୍ରକଟୀ ଭୂସୁରବଲ୍ଲଭ (ବ୍ରାହ୍ମଣଶ୍ରେଷ୍ଠ) ସେବେ (ସେବାକରେ) ।

୧୫—ସବତା-ସୂର୍ଯ୍ୟ; କବତା-କଞ୍ଜ-କବିତାରୂପ ପଦ୍ମ; ଭଞ୍ଜବୀରବର-କବି ସମ୍ରାଟ୍ ଉପେନ୍ଦ୍ରଭଞ୍ଜ, ସୁଧା-ଅମୃତ ।

୧୮—ପୂର୍ଣ୍ଣଚନ୍ଦ୍ର ଗୀତ-ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର କାବ୍ୟ ।

୧୯—ଅନନ୍ତ-ଆକାଶ; ଶୂନ୍ୟରୁ-ଆକାଶରୁ; ଶୂନ୍ୟ ହେବେ-ଲୋପ ପାଇଯିବେ ।

୨୦—ସାଧବ-ପଣ୍ଡିତ; ସାଧୁଲୋକ; ଭାବଯଅଭିପ୍ରାୟ ।



Digitized by srujanika@gmail.com

## ପ୍ରାର୍ଥନାମୟୀ—

ସ୍ମୃତି-ବନିତା-ସୁରମ୍ୟ-ଗନ୍ଧ-ପାରିଜାତ
ସୁଲକ୍ଷଣ ଲକ୍ଷ୍ମଣ ଅଗ୍ରଜ ରଘୁନାଥ । ୨୧ ।

ସର୍ପଇନ ଦର୍ପକ-ଦହନ ତ୍ରିପୁରାରି
ସ୍ୱୟମ୍ଭୁ-ବନ୍ଦିତ ଅଜ ସମ ଗୁଣଧାରୀ । ୨୨ ।

ସକଳ ଜନକ. ଛୋଣୀ ଭ୍ରମ-ହରଷଦ
ଶ୍ୟାମଳ ମୂରତି ସାଧି ସେବନ୍ତି ଶ୍ରୀପଦ । ୨୩ ।

ସୁମନଶର-ଗଞ୍ଜନ ସ୍ୱରୂପ ମାଧୁରୀ
ସଂସାରେ ପଶୁଣୀ ପ୍ରାଣେ ଆତ୍ମାରୂପେ ସ୍ଫୁରି । ୨୪ ।

ସୁଶିଳା ସୁଶୀଳା କଲ ଧୂଳି ପ୍ରସାଦରେ
ସତେ କେତେ ବର ଦେଲ ଧୀବରେ ସାଦରେ । ୨୫ ।

ଶମନ ଡରଇ ଯା'ର ଶୁଣିଲେ ପ୍ରତାପ
ସାଧୁ ନେତ୍ରୁ ପ୍ରେମଭରେ ବହୁ ଯାଏ ଆପ । ୨୬ ।

ସୂର୍ଯ୍ୟସମ କାନ୍ତି ଦେଖି ସେ ଅନ୍ଧାର-ପାପ
ଶମିଯାଏ ପ୍ରାଣଭୟେ କହି ମଲ ବାପ । ୨୭ ।

---

୨୧—ସ୍ମୃତି-ଧର୍ମଶାସ୍ତ୍ର; ଅଗ୍ରଜ-ବଡ଼ଭାଇ ।

୨୨—ସର୍ପଇନ-ଅନନ୍ତନାଗ; ଦର୍ପକ-କାମ; ସ୍ୱୟମ୍ଭୁ-ବ୍ରହ୍ମା; ଅଜ-ଯାହାର ଜନ୍ମ ନାହିଁ ।

୨୩—ଭ୍ରମ ହରଷଦ-ମହାଦେବଙ୍କ ଆନନ୍ଦ-ଦାୟକ ।

୨୫—ସୁଶିଳା--ଉତ୍ତମ ପଥର; ସୁଶୀଳା-ସ୍ତ୍ରୀ ।

୨୬—ଶମନ-ଯମ; ଆପ-ଜଳ ।



Digitized by srujanika@gmail.com

ସତ୍ୟସନ୍ଧ ଧର୍ମଅଟଳ ତେଜିଣ ନଗର
ସଜନୀ ଭ୍ରାତା ସଙ୍ଗତେ ଭ୍ରମିଲ ନଗର । ୨୮ ।
ଶବର-ବରଦ ଶ୍ୟାମବଦନେ ପ୍ରେମଭରେ
ସୁଗ୍ରୀବ ତାରିଲେ ବାଳି ବିନାଶି ନିର୍ଭରେ । ୨୯ ।
ସେତୁ କଲେ ହେଳେ ତୁମ୍ଭେ ବାନରସଇନ
ସ୍ୱର୍ଣ୍ଣମୟୀ ଲଙ୍କାପୁରୀ ହେଲା ଛିନ୍ନ ଭିନ୍ନ । ୩୦ ।
ଶତ୍ରୁ ଚିହ୍ନିଲ କି ହୋଇଲା ଧୀର ବିଭୀଷଣ
ତୁମ୍ଭେ ଶ୍ରୀହସ୍ତେ ଦେଲ ରାଜସିଂହାସନ । ୩୧ ।
ସରିତପତି ଶୁଖାଇ ଥାନ୍ତ କୋପ କରି
ଶୀଘ୍ରେ ଶରଣ ସମ୍ଭାଳି ରଖିଲ ହେ ହରି । ୩୨ ।
ଶୁଣାଅଛି ଗୁଣାତ୍ମକ ତୁମ୍ଭ କଳେବର
ସହଜେ ନିର୍ଗୁଣବପୁବନ୍ତ ଗୁଣଧର । ୩୩ ।
ସଂସାରେ ଅସାର ଆଶା ମନେ ହୋଇ ମତ୍ତ
ସାଧନା ଅଛି କି ଭବସିନ୍ଧୁ ତରଣେ ତ । ୩୪ ।
ଶୂନ୍ୟେ ସୌଧ ତୋ ଆଶାରେ ରଚାଇବ ବାନ୍ଧବ
ସାନ ହୋଇ ସାନୁମାନ ଶୃଙ୍ଗ ଆରୋହିବ । ୩୫ ।
ଷୋଳକଳା କୃପାଚନ୍ଦ୍ର ଛୋଟାରେ ପୂରିତ
ସତେ କି ଦ୍ୱିତୀୟା ଶଶୀ ନୋହିବ ଉଦିତ । ୩୬ ।
ସମ୍ଭବିବ ଅସମ୍ଭବ ହେ ଭବତାରକ
ଶଇଳ ଲଙ୍ଘୁଛି ପଙ୍ଗୁ କୃପାରେ ମାଲିକ । ୩୭ ।

---

୨୮—ନଗର-ସହର; ପର୍ବତର।

୩୨—ସରିତପତି-ସମୁଦ୍ର ।

୩୫—ସାନୁମାନ-ପର୍ବତ ।



Digitized by srujanika@gmail.com

ସାମ ଗାଏ ନାମେ ଯାର ନଥାଏ ବିଶ୍ବାସ
ଶ୍ରୀଦାମ ସଖା ହେ ଦାମଧାରଣ ଶ୍ରୀବାସ । ୩୮ ।
ଗୀତା ପ୍ରେମ ତରଙ୍ଗିଣୀ ରସମୟ ଗୀତ
ଶ୍ୟାମଳ ସୁନ୍ଦର ସତେ ହେବ ମୋ ବଦନ । ୩୯ ।
ସଂଖ୍ୟାବାନେ ରଖା ଗିନା କରିବେ ସନ୍ତାନେ
ସରଳତା ନାହିଁ ମୂର୍ଖ ଜାଣିବ କାହୁଁ ଯେ । ୪୦ ।
ସୁଧାକର କରୁ ତମ-ତୁଣ୍ଡେ ଜିହ୍ବା ରହେ
ଶତ ଜନ୍ମ ହେଲେଁ ମୂର୍ଖ ସଂସ୍କୃତ କି କହେ । ୪୧ ।
ଶାସ୍ତ୍ର ସ୍ମୃତ କେ ଜାଣିବ ସୁବୋଧ ନୋହି
ଶଙ୍ଖ ପର ନୀଚ ମୁଖ ଶୋଭିତ ସେ ହୋଇ । ୪୨ ।
ସୁରତ-ରଙ୍ଗିଣୀ ପଦ ନୂପୁର-ନିକ୍ୱଣ
ଶୁଣେଇ ମଧୁମୟ ଯଥା ସାଧୁଙ୍କ ବଚନ । ୪୩ ।
ଶାଣବାଣଧର ସେହି ସାଧବ ସଙ୍ଗରେ
ସଦା ବାସ ହେଉ ଦିଅ ଏହି ଅଭୟରେ । ୪୪ ।
ଶୟନେ ସ୍ବପନେ ସେ ତାରକବ୍ରହ୍ମ ନାମ
ସନ୍ତତ ହୃଦୟ-ସଦ୍ମ କରୁ ମୋର ଧାମ । ୪୫ ।
ଗୀତା-ହୃଦାମ୍ବୁଜ-ରବି କୌଶଲ୍ୟା-ନନ୍ଦନ
ଶରଣ ସୋଦର ନର ଅମର-ବନ୍ଦନ । ୪୬ ।
ସନ୍ତାପ ଦାରୁଣଗ୍ରୀଷ୍ମ ଶ୍ରୀଖଣ୍ଡ-ଚନ୍ଦନ
ସତାଳିଶ ପଦେ ଗ୍ରନ୍ଥକର୍ତ୍ତା ନତବଦନ । ୪୭ ।

---

୩୮—ସାମ-ସାମବେଦ; ଦାମଧାରଣ-ବୈଜୟନ୍ତୀମାଳା ଧର ।
୪୦—ସଂଖ୍ୟାବାନେ-ପଣ୍ଡିତମାନେ,

—ଶେଷ—

Digitized by srujanika@gmail.com

# ସର୍ଗ ଦୁଇ

ରାଗ—କାଳି

## —ବିଶ୍ୱାମିତ୍ର ଆଗମନ ଓ ଦଶରଥଙ୍କ ସହ ପରାମର୍ଶ—

ସୁନ୍ଦ-ରମଣୀ ସୁନ୍ଦର ମଣି
ସୁନ୍ଦର ଭଆଇଲ୍ଲ
ସୁତ ସୁବାହୁ ସଇନ ବାହୁ
ଋଷିଙ୍କି ନାଶ କଲ୍ଲ । ୧ ।

ସିଦ୍ଧ ବନରେ ସିଦ୍ଧ ଜନରେ
ଅସିଦ୍ଧ ହେଲ୍ଲ ଯାଗ
ସୁରଙ୍କୁ ହବ ସୁଖେ ଆହବ
ନ ଦେଲେ ମହାଭାଗ । ୨ ।

ଶୁନୁଁ ଶବଦ ଶୀଘ୍ରେ ବରଦ
ସୂର୍ଯ୍ୟବଂଶଜ ରାମ
ସୂଚନା ଲଭି ସାକେତ ଭୁବ
ବାହାର ତପୋଧନ । ୩ ।

---

୧—ସୁନ୍ଦରମଣୀ—ସୁନ୍ଦରାକ୍ଷସର ସ୍ତ୍ରୀ, ତାଡ଼କା; ସୁନ୍ଦର ମଣି-ଭଲ ମନେ କର । ବାହୁ-ଗୃହ, ଗୃଳନ କରୁ ।

୨—ସୁରଙ୍କୁ-ଦେବତାମାନଙ୍କୁ । ହବ-ଯଜ୍ଞଭାଗ, ଘୃତାହୁତ । ମହାଭାଗ-ଋଷିମାନେ ।

୩—ସାକେତ-ଅଯୋଧ୍ୟା ।

—ଚଉଦ—

Digitized by srujanika@gmail.com

ସରସ ଭରେ ଶର ଗଣରେ
ସାକେତ ପୁରେ ମିଳେ
ଷର୍ଜନ ହେଉ ସେ ତପସ୍ବୀ
ଏମନ୍ତ ମନେ ଘେନିଲେ । ୪ ।

ସଗୁଣବନ୍ତ ବ୍ରହ୍ମେ ପୂରିତ
ଏ ବାରସ୍ତ୍ରୀ ପର
ଶୋଭି ବରଣେ କନ୍ୟା କି ଏଣେ
ବର ଖୋଜେ ତା ସର । ୫ ।

ସୁମନା ମାଳା ସଖିରେ ମେଳା
ବୀଣା-ବାଦନୀ ଗଣେ
ସୁଚେ ଆନନ- ଉତ୍ତିମ-ସ୍ବନ
ନୃପତି ମୋଦ ମନେ । ୬ ।

---

୫—(ଶ୍ଳେଷ)ଅଯୋଧ୍ୟା ସଗୁଣବନ୍ତ ବ୍ରହ୍ମରେ ପୂରିତ ହେବାରୁ ବାରସ୍ତ୍ରୀଙ୍କ ପରି ହୋଇଛି; ବାରସ୍ତ୍ରୀ(ବୈକୁଣ୍ଠ) କପରି ? ତାହା ସଗୁଣବନ୍ତ ବ୍ରହ୍ମେ (ନାରାୟଣ, ସତ୍ତ୍ବଗୁଣ ଯୁକ୍ତ) ଦ୍ବାରା ପୂରିତ(ପୂର୍ଣ୍ଣ) ହୋଇଛି । ଅଯୋଧ୍ୟା-- ସଗୁଣବନ୍ତ ବ୍ରହ୍ମେ (ଗୁଣ ସହିତ ଯୁକ୍ତ ଅଛନ୍ତି ଯେ ବ୍ରହ୍ମ, ସେ ରାମ ଅଥବା ଉତ୍ତମଗୁଣବାନ୍ ଲୋକ ଓ ବ୍ରହ୍ମରୂପୀ ରାମ) ତାହାଙ୍କଦ୍ବାରା ପୂରିତ (ପୂର୍ଣ୍ଣ ଅଥବା ନଗରର ଅଖଣ୍ଡ ଶୋଭିତ) ଧାରଣ କରିଅଛି । ପୁଣି ଅଯୋଧ୍ୟା ବରଣେ ଶୋଭା ହେବାରେ କନ୍ୟାପରି ହୋଇ ତା ସର ବର ଖୋଜେ କି ? କନ୍ୟା କପରି-ବରଣେ (ବରଣ କରିବାରେ) ତା ସର(ତା ତୁଲ୍ୟ ବା ଅନୁରୂପ) ବର (ସ୍ବାମୀ) ତାକୁ ଖୋଜେ । ଅଯୋଧ୍ୟା-ବରଣେ (ପ୍ରାଚୀର ଦ୍ବାରା) ଶୋଭିତ ହୋଇ ତା ସର (ତା ସମାନ) ବରଂ (ଶ୍ରେଷ୍ଠ ନଗର) ଆଉ କାଏ ଅଛି ବୋଲି ଖୋଜେ କି ?

୬—(ଶ୍ଳେଷ)ପୁଣି ସୁସ୍ବର କନ୍ୟା କପରି-ସୁମନା ମାଳା(ଫୁଲମାଳ) ପୁଣି ବୀଣା-ବାଦନୀ ଅଛନ୍ତି ଏପରି ଯେ ସଖୀମାନେ ସେମାନଙ୍କଦ୍ବାରା ମେଳା ;

—ଧାଦର—

Digitized by srujanika@gmail.com

ଶ୍ରୀ ଅଲିଙ୍ଗନେ ସଦେ ବ ଏଣେ
ଶାରଙ୍ଗଧର ଶୋଭ୍ରା
ସଦା ବହାର ଚତୁର କର
ବ-ନାୟକରେ ଅବା । ୭ ।

---

(ଯୁକ୍ତା) ହୋଇଥାଏ । ସେଠାରେ ଅନଳ ଭୃଣ୍ଡିମ ସ୍ୱନ (ଝୁଲଝୁଲ ରବ) ଶୃଣ୍ୱେ (ଶୁଣାଯାଏ) ନୃପତି (ରାଜା; ଏଠାରେ ଅମନ୍ଦିତ ରାଜା) ମନେ (ମନରେ) ମୋଦ (ସନ୍ତୁଷ୍ଟ)ହୁଅନ୍ତି । ଅଯୋଧ୍ୟା-ସୁମନା ମାଳା (ମଣ୍ଡିତ ମଣ୍ଡଳୀ) ବୀଣାବାଦନୀ (ବୀଣା ବଜାଇ ଜାଣୁଥିବା ବା ବୀଣାବାଦନଅଭ୍ୟସ୍ତା) ସଙ୍ଗୀତଜ୍ଞଙ୍କଦ୍ୱାରା ମେଳା (ଯୁକ୍ତା ବା ପୂର୍ଣ୍ଣା) ଅଟେ । ପୁଣି ଅନଳ (ମୁଖ) ଡିଣ୍ଡିମ (ବାଦ୍ୟବିଶେଷ) ସ୍ୱନ (ଶବ୍ଦ) ଶୁଭେ । ଅର୍ଥାତ୍ ନଗରୀ ସଦା ଉତ୍ସବମୟୀ ହୋଇଥାଏ । ନୃପତି (ରାଜା ଦଶରଥ) ଅଥବା ନୃ (ମନୁଷ୍ୟ) ପତି (ଶ୍ରେଷ୍ଠ) ମନେ (ମନରେ) ମୋଦ (ସନ୍ତୁଷ୍ଟ ହୁଅନ୍ତି) ।

୭—(ଶ୍ଳେଷ) ଏ ଅଯୋଧ୍ୟା ଶ୍ରୀ ଅଲିଙ୍ଗନେ ଶାରଙ୍ଗଧର (ନାରାୟଣ) ତାହାଙ୍କର ଶୋଭା (ସୌନ୍ଦର୍ଯ୍ୟ) ସଦେ ଏବେ ଧାରଣ କରି ଅଛନ୍ତି ? ନାରାୟଣ କପରି ? ଶାରଙ୍ଗଧର ( ଶାର୍ଙ୍ଗଧନୁଧାରକ ) ଶ୍ରୀ (ଲକ୍ଷ୍ମୀ) ଅଲିଙ୍ଗନେ (କୋଳାଗତରେ) ପୁଣି ସଦା (ସବୁବେଳେ) ଚତୁରକର (ଚତୁର୍ଭୁଜ ହାତ ବଣିଷ୍ଟ, ଚତୁର୍ବାହୁ) ବ-ନାୟକ (ଗରୁଡ଼) ତାଙ୍କ ପୃଷ୍ଠୋପରି ବିହାର କରନ୍ତି । ଅଯୋଧ୍ୟା-ଶାରଙ୍ଗଧର (ମତଙ୍ଗଜମାନଙ୍କର ଧାରଣ କର୍ତ୍ତା-ଶାରଙ୍ଗ ଗୃତକେ ଭୃଙ୍ଗ ଭୃରଙ୍ଗ ମତଙ୍ଗକେ)ଅର୍ଥାତ୍ ରାଜାଙ୍କର ବହୁତ ମତଙ୍ଗଜ ଅଛନ୍ତି-ଏମନ୍ତଭାବ । ପୁଣି ଶ୍ରୀ (ସଂପତ୍ତି ବା ଶୋଭା) ଅଲିଙ୍ଗନେ (କୋଳାଗତ କରି)ସଦା(ସବୁକାଳରେ) ଚତୁରକର(ବୁଦ୍ଧିମାନ ଲୋକଙ୍କର) ପୁଣି ବ-ନାୟକ (ସଜ୍ଜନ ଶ୍ରେଷ୍ଠବ୍ୟକ୍ତିମାନଙ୍କର-ନାୟକେ ସଜ୍ଜନେ ଶ୍ରେଷ୍ଠେ ହାର ମଧ୍ୟମଣୀ ବର୍ଷ) ବିହାର ଅବା (ବିହାର ସ୍ଥଳକି ?) ।

—ଷୋହଳ—

Digitized by srujanika@gmail.com

ସର୍ବେ ବତ୍ସଳ ଭବତ ପୂଳ
ଭବ ବଶରେ ଖ୍ୟାତ
ସୁଷମା ନାହିଁ ଅପଣେ ଯହିଁ
ଅକ୍ରୁଟ ସଦା ନିତ୍ୟ । ୮ ।
ସ୍ୱର୍ଗ ସମାନ ବଣିକ ଗଣ—
ନୃପର୍ ଙ୍କ ପରତୀତ

---

୮—(ଶ୍ଳେଷ)ପୁଣି ବସ୍ତୁ କପର୍—ସର୍ବେଭକ୍ତତ ବତ୍ସଳ (ଭକ୍ତ ସମୂହ) ପୂଳ ହୋଇ୍ ଭାବବଶରେ (ଭକ୍ତରେ) ଖ୍ୟାତ ଅଟନ୍ତି । ଅଥବା ପୂଳ ହୋଇଛନ୍ତି ସର୍ବେ (ସମସ୍ତେ) ଭକ୍ତ ସମୂହଙ୍କର ଭାବବଶରେ ଖ୍ୟାତ (ପ୍ରସିଦ୍ଧ)ଅଟନ୍ତି ଯେ । ପୁଣି ଅପଣେ (ନିଜେ) ସଦା ଅକ୍ରୁଟ (ଅକ୍ଷୟ) ଅଟନ୍ତି ଏଣୁ କର ନିତ୍ୟ ଅଟନ୍ତି । ଏଥିଲାଗି ତାଙ୍କ କେହି ଖୁ (ଉତ୍ତମରୂପେ) ସମା (ସମାନ) ନାହିଁ । (ଶଷୟୋଃ ସଃ—ସର୍ବତ୍ର ଶକାର ଷକାରୟୋଃ ସକାରଃ ଭବତ—ଇତ ପ୍ରାକୃତ ବ୍ୟାକରଣ) ।

ଅଯୋଧ୍ୟା କପର୍—ସର୍ବେ (ସମସ୍ତେ) ପୂଳ (ଏକତ୍ରିତ) ଭକ୍ତ ବତ୍ସଳ ଭବ (ଅଲମସ୍ତ ଭାବ) ବଶରେ ଖ୍ୟାତ (ପ୍ରସିଦ୍ଧ) ଅର୍ଥାତ୍ ଯଙ୍କ ଭାବବଶରେ ପ୍ରସିଦ୍ଧ ଅଟେ । ଯଥା ଅଲମୟୋ ଯଙ୍କଃ—ଏହ ଉଦାହରଣ । ଅପଣେ (ନିଜେ) ଅଯୋଧ୍ୟା ଯହିଁ ସଦା (ସବୁବେଳେ) ଅକ୍ରୁଟ (ଅଖଣ୍ଡଶୋଭା, ପରମ ଶୋଭା) ଏଣୁ ନିତ୍ୟ (ସବୁକାଳରେ) ସୁଷମା (ତା ତୁଲ୍ୟ ଶୋଭାମୟୀ) ଅଉ କୌଣସି ନଗରୀ ନାହିଁ । ଅଥବା ଯେଉଁ ଅଯୋଧ୍ୟାରେ ଅପଣେ(ଦୋକାନ ମାନେ) ଅକ୍ରୁଟ (ପୂର୍ଣ୍ଣ, ପଦାର୍ଥମାନଙ୍କଦ୍ୱାରା) ଏଣୁ ନିତ୍ୟ (ସବୁବେଳେ) ତା ସମାନ ସୁଷମା ନାହିଁ ।



Digitized by srujanika@gmail.com

ସଦା ବିହାର ବଣ୍ଟାବସୁର
ଭାବନା ଏଣୁ ଚିତ୍ତ । ୯ ।
ଶୁଦ୍ଧ ସୁପୟ କରୁ ଉଦୟ
ବ୍ରଜେ କି ଜହ୍ନୁ ସୁତା
ଶିବା କପର୍ଦ୍ଦୀ ଶୋଭା ସଂପାଦ
ପସର୍ ସୁଶୋଭିତା । ୧୦ ।

---

୯—(ଶ୍ଳେଷ)ବଣିକଗଣ (ବେପାରୀମାନଙ୍କର) କର (ହସ୍ତ) ସେ ସ୍ୱର୍ଗ ସମାନ କି ? (ସ୍ୱର୍ଗପୁର କି ?) ଏମନ୍ତ ପ୍ରତୀତ ହୁଏ (ଜଣାପଡ଼େ) । ସ୍ୱର୍ଗ କପରେ–ବଣ୍ଟାବସୁ (ଚିନ୍ତରଥ, ନାରଦାଦି ଅଥବା ଗନ୍ଧର୍ବବିଶେଷ) ସଦା (ସବୁବେଳେ) ବିହାର କରିବାରେ ମନକୁ ଭାବନା ଆସେ ।

ବଣିକ କର କପରେ–ବଣ୍ଟା (ଗୃହକାର୍ଯ୍ୟ ପରିମିତ ବଟକରା) ତାହା ବସୁ (ରତ୍ନ) ସଦା ଚିତ୍ତରେ ଭାବନା (ବଟକରାର ଅନ୍ୟାନ୍ୟ ଅଂଶ ଅର୍ଥାତ୍ ଛଟାକି, ପଲ, ରତି, ଚନା, ମାଢ଼ ଇତ୍ୟାଦି) ବିହାର କରେ (ଚଳପ୍ରଚଳ ହୁଏ ) ।

୧୦—(ଶ୍ଳେଷ) ବ୍ରଜେ (ଗୋପାଳମାନେ)ଶୁଦ୍ଧ ସୁପୟ ଉଦୟ କରୁ ଜହ୍ନୁସୁତା (ଗଙ୍ଗା)ଙ୍କ ପରି ହୋଇଛନ୍ତି କି ? ଗଙ୍ଗା କପରେ–ଶୁଦ୍ଧ (ପବିତ୍ର) ସୁପୟ (ଉତ୍ତମଜଳ) ତାହାକୁ ଉଦୟ (ପ୍ରକାଶ) କରନ୍ତି । ବ୍ରଜ କପରେ–ଶୁଦ୍ଧ (ଖାଣ୍ଟି) ସୁ (ଉତ୍ତମ) ପୟ (କ୍ଷୀର) ତାହାକୁ ଉଦୟ (ବିକପ୍ରଗୃର) କରନ୍ତି । ଶିବା କପର୍ଦ୍ଦୀ ଶୋଭା ସଂପାଦ (ସଂପାଦନକାରୀ) ଯେ କୈଳାସ ତା ତୁଲ୍ୟ ପସର ସୁଶୋଭିତା (ଅତି ଶୋଭମାନ୍ୟା) । କୈଳାସ କପରେ–ଶିବାକପର୍ଦ୍ଦୀ (ଗୌରୀଶଙ୍କର) ଏ ଦୁହିଙ୍କର ଶୋଭାକୁ ସଂପାଦ (ସଂପାଦନ କରେ) ସୁନ୍ଦର ହୋଇଥାଏ । ପସର–ଶିବା (ହରିଡ଼ା) କପର୍ଦ୍ଦୀ (କଉଡ଼ି) ତହିଁରେ ସୁଶୋଭିତା (ସୁନ୍ଦର) ହୋଇଅଛି ।



Digitized by srujanika@gmail.com

ସତତ କ ବ୍ୟୋମ ହୋଇ ସଙ୍ଗମ
ଚନ୍ଦ୍ର ତାରକା ଧର
ସୁବୃନ୍ଦ ନାଗେ ଏଣୁ କ ବେଗେ
ବଳସଦ୍ମର ସର । ୧୧ ।
ଶୋଭେ କଂସାର କ ଦଣ୍ଡଧାରୀ
ପାନ୍ଥଗଣଙ୍କୁ ଘେର
ସୁଦୃଶ୍ୟ ରାଜ ନୟନେ ହୋଇ
ଗାଧିଜ ଉପନ୍ୟାସ । ୧୨ ।

---

୧୧—(ଶ୍ଲେଷ) ପୁଣି ସେ ପସରା ଚନ୍ଦ୍ରତାରକା ଧର ସଙ୍ଗମ ହୋଇ ସତେ ବ୍ୟୋମ (ଆକାଶ) କି ? ଆକାଶ-ଚନ୍ଦ୍ରତାରକା (ଚନ୍ଦ୍ର ଓ ତାରା ସମୂହ) ଏମାନଙ୍କର ସଙ୍ଗମ (ସଙ୍ଗତ) ତାକୁ ଧର (ଧାରଣ) କରିଥାଏ । ପସରା-ଚନ୍ଦ୍ର (ସୁବର୍ଣ୍ଣ ବା କର୍ପୁର) (ଚନ୍ଦ୍ରଃ କର୍ପୂର କାମ୍ପିଲ୍ୟ ହେମ ଶୁଭ୍ରାଂଶୁ ବାରଷ୍ଣୁ) ତାରକା ( ମୁକ୍ତା ସମୂହ ) ଏମାନଙ୍କର ସଙ୍ଗମ (ଏକତ୍ରାବସ୍ଥାନକୁ) ଧରିଛି। ପୁଣି ସେ ପସରା ବଳସଦ୍ମ (ପାତାଳ) ପରି । ପାତାଳ-ନାଗେ (ନାଗମାନଙ୍କ ଦ୍ୱାରା) ସୁବୃନ୍ଦ (ଉତ୍ତମ ସୁନ୍ଦର) । ପସରା-ନାଗ (ଅଭ୍ର, ସୀସା, ରଙ୍ଗ–ନାଗୋଽଭ୍ରେ, ଶୃଙ୍ଗ ସର୍ପୋଭ୍ୟ ନାଗଦନ୍ତ ଗଜାନ୍ବୁଧ୍ନୀ; କେଶରେ ସୀସକେ ରଙ୍ଗେ-ଇତି କୁମୁଦ) ଦ୍ୱାରା ସୁନ୍ଦର ହୋଇଛି ।

୧୨— (ଶ୍ଳେଷ) କଂସାର, ପାନ୍ଥଗଣଙ୍କୁ ଘେର ଦଣ୍ଡଧାରୀ ପରି (ରାଜାତୁଲ୍ୟ) ଶୋଭେ, କି ? ରାଜା-ପାନ୍ଥଗଣଙ୍କୁ (ରାଜକର୍ମଚାରୀବିଶେଷଙ୍କୁ) ଘେରି (ଚତୁଃପାର୍ଶ୍ୱରେ ରଖି) ଶୋଭା ପାନ୍ତି । କଂସାର-ପାନ୍ଥଗଣଙ୍କୁ (କଂସା ଗିନାଇତ୍ୟାଦିକୁ) ଘେରି (ଚତୁଃପାଖରେ ରଖି) ସୁନ୍ଦର ଦଶେ । ବହସ୍ୱାର୍ଥ ଏମନ୍ତ ଅଭିପ୍ରାୟ ।

—ଇତି—

Digitized by srujanika@gmail.com

ସହଜେ ମିତ୍ର ପର ଅମିତ—
ତେଜା ସେ ମୁନିବର
ସିଂହଦୁଆରେ ସେ ବେଶଧାରୀ
ଦେଖି ଯୋଡ଼ିଲା କର । ୧୩ ।

ସତ୍ୱର ଆସି ସ୍ୱାମି ଦେବ ଭକ୍ତି
କହଇ ପ୍ରତିହାର
ଶକ୍ର-ସୁତର ସହସ୍ର-କର
ଶୁଣିବା ନୃପବର । ୧୪ ।

ଶତ ସୂର୍ଯ୍ୟର ସମ, ଧୈର୍ଯ୍ୟର
ଶଇଲ ପର ଦିଶେ
ସାର ତପସ୍ୱୀ ସାମକୁ ଘୋଷି
ଦରଶନକୁ ଆସେ । ୧୫ ।

ସ୍ୱର୍ ଲକ୍ଷଣ ଶ୍ରବଣ କରି
ଶୁଷ୍କ ପାଦପଚୟ
ଶାଖାରେ ପୂର୍ଣ୍ଣ ସୁପର୍ଣ୍ଣ ଘନ
ଧରିଛି ଯେ ଅଟୟ । ୧୬ ।

ସ୍ୱୟମ୍ଭୂ ପରି ସୁନାମ ଧାରୀ
ବୋଲନ୍ତି ବିଶ୍ୱାମିତ୍ର
ଶ୍ରବଣେ ରାଜେନ୍ଦ୍ର ସେ କ୍ଷଣି କହେ
କର ଏ ସ୍ଥାନେ ଉପସ୍ଥିତ । ୧୭ ।

---

୧୩—ମିତ୍ରପର-ସୂର୍ଯ୍ୟତୁଲ୍ୟ; ଅମିତତେଜା-ଅତିତେଜସ୍ୱୀ ।
୧୪—ସହସ୍ରକର-ସୂର୍ଯ୍ୟ ।

—କୋଡ଼ଏ—

Digitized by srujanika@gmail.com

ସେ କ୍ଷଣି ଋଷି ପ୍ରଚେତସ୍ଙ୍କ ଦ୍ୱଷ୍ଟି
ବଳସ୍ମୀ ଦଶରଥ
ସୁରଜେ୍ୟଷ୍ଠର ଶ୍ରୀପଦେ ଧୀର
ନମେ କି ଶଚୀନାଥ । ୧୮ ।

ସାବିତ୍ରୀ ସେବ୍ୟ ବେଦାନ୍ତ ବେଦ୍ୟ
ସେ ବିଶ୍ୱାମିତ୍ର ଋଷି
ସତେ ବିଶେଷ— ନେତ୍ର ସୁଖଦ
ଦଶରଥ ଯେ ଦର୍ଶି । ୧୯ ।

ସଭା କି ବେଦ ସୁମନ୍ତ୍ର ଭେଦ—
ଗୀତରେ ପାରଙ୍ଗମ
ସ୍ଥାନ କୈଳାସ ସଦ୍‌ଗୁଣ ଦ୍ୱିଗୁଣ
ରାମଦେବର ଧାମ । ୨୦ ।

---

୧୮—ସୁରଜ୍ୟେଷ୍ଠ–ବ୍ରହ୍ମା; ଶଚୀନାଥ–ଇନ୍ଦ୍ର ।

୧୯—(ଶ୍ଳେଷ) ବିଶ୍ୱାମିତ୍ର ବ୍ରହ୍ମାଙ୍କ ପକ୍ଷ– ବ୍ରହ୍ମା– ସାବିତ୍ରୀସେବ୍ୟ (ସାବିତ୍ରୀପୂଜ୍ୟ) ବେଦାନ୍ତ ବେଦ୍ୟ (ବେଦାନ୍ତପଣ୍ଡିତ); ବିଶ୍ୱାମିତ୍ର–ସାବିତ୍ରୀ ଗାୟତ୍ରୀଇତ୍ୟାଦି ମନ୍ତ୍ରଉପାସକ; ବେଦର ଅନ୍ତ (ଶେଷପର୍ଯ୍ୟନ୍ତ) ଯେ ବେଦ୍ୟ (ଜାଣିବାର) ଅଥବା ବେଦାନ୍ତ ବେଦ୍ୟ (ଜାଣିବାର) ଅଟନ୍ତି, ଦଶରଥ ଇନ୍ଦ୍ରଙ୍କପକ୍ଷ–ଇନ୍ଦ୍ର–ବିଶେଷ ନେତ୍ର ( ସହସ୍ରଚକ୍ଷୁ ) ସୁଖଦ (ସୁଖଦାୟକ) ଦଶରଥ–ବିଶେଷ ନେତ୍ର ସୁଖଦ (ବିଶେଷଭାବରେ ଚକ୍ଷୁର ସୁଖଦାନ କାରୀ ଅର୍ଥାତ୍ ପରମସୁନ୍ଦର) ଅଟନ୍ତି ।

୨୦—ସୁମନ୍ତ୍ର ଭେଦଗୀତରେ ପାରଙ୍ଗମ ହେବାରୁ ସଭା ବେଦ ପକ୍ଷ । ବେଦ–ସୁମନ୍ତ୍ର ଭେଦ (ଉତ୍ତମମନ୍ତ୍ରମାନଙ୍କର ଭେଦ ଯେ ବିଶ୍ଳେଷଣ) ଗୀତରେ (ନିୟମରେ) ପାରଙ୍ଗମ (ଶ୍ରେଷ୍ଠ) ସଭା–ଭେଦଗୀତରେ ପାରଙ୍ଗମ

—ଏକୋଇଶି—

Digitized by srujanika@gmail.com

ସୁମରକତ                    ସଦା ବ୍ୟକତ
ନୀଳଗିରୀନ୍ଦ୍ର ସମ
ସତେ କେଶରୀ                    ସର ଅଦ୍ଭୁତ
କିବା ସେ ନୃପୋତ୍ତମ । ୨୧ ।
ସୈନ୍ୟ ନିକର                    ସଦା ଯେ କର
ରଙ୍ଗ ଶୋଭିତ ବଶେ
ଶାର୍ଦ୍ଦୂଳା ବର                    ଶୋଭିତ ବାର
ବାରେ ନିକୁଞ୍ଜେ ତୋଷେ । ୨୨ ।

(ଦକ୍ଷ) ସୁମନ୍ତନାମାମନ୍ତ୍ରୀ ଯୁକ୍ତ ହୋଇଛ । ପୁଣି ସଭା ବାମଦେବର ଧାମ ହେବାରୁ କୈଳାସ ସଦୃଶ ଦୃଶ୍ୟ ହୁଏ । କୈଳାସ–ବାମଦେବ (ଶିବ ବା ମହାଦେବ) ଧାମ (ସ୍ଥାନ) । ସଭା–ବାମଦେବ (ସ୍ୱନାମପ୍ରସିଦ୍ଧ ମନ୍ତ୍ରୀ ବା ଋଷିଙ୍କର) ଧାମ (ସ୍ଥାନ) ଅଟେ ।

୨୧—(ଶ୍ଳେଷ) ସଭା ସୁମରକତ ସଦା ବ୍ୟକ୍ତ ହେବାରେ ନୀଳଗିରୀନ୍ଦ୍ର (ନୀଳାଚଳ, ପୁରୀ) ସମ ହୋଇଛ । ନୀଳାଚଳ–ସୁ (ଉତ୍ତମ) ମରକତ ତୁଲ୍ୟ-ସଦା ବ୍ୟକ୍ତ (ପ୍ରକାଶିତ) ହୋଇଛନ୍ତି ଏବଂରୂପ ଯେ ନୀଳମାଧବ ତହିଁରେ ସମ (ପୂର୍ଣ୍ଣ) ଅଟେ । ସଭା–ସୁ (ଉତ୍ତମ) ମରକତ (ମର୍କତମଣି) ସଦା (ସବୁବେଳେ) ବ୍ୟକ୍ତ (ପ୍ରକାଶିତ) । ଏଠାରେ ସଭାଗୃହ ଇନ୍ଦ୍ରନୀଳାଦ ମଣି ନାନାଦ ମୁକ୍ତାଦ୍ୱାରା ଶୋଭିତ-ଏ ଭାବ । କିବା ସେ ନୃପୋତ୍ତମ (ରାଜାଶ୍ରେଷ୍ଠ ଦଶରଥ) କେଶରୀ (ସିଂହ) ସର (ତୁଲ୍ୟ) ଅଟନ୍ତି କି ? ସିଂହ–କେଶରୀ–କେଶର ଯୁକ୍ତ । ଦଶରଥ–କେ ସର; ତାକୁ କିଏ ସର (ସମାନ) ହେବ । କେହି ସମାନନୁହନ୍ତି–ଏପର ଭାବ ।

୨୨—(ଶ୍ଳେଷ) ସୈନ୍ୟନିକର–ସୈନ୍ୟସବୁ । କର–ହସ୍ତ; ରଙ୍ଗ–ଅସ୍ତ୍ର ବଶେଷ; ଶାର୍ଦ୍ଦୂଳାବର–ବସ୍ତ୍ର; ଶୋଭିତ–ଶୋଭା; ନିକୁଞ୍ଜେ–ନିକୁଞ୍ଜ କରେ, ଭୁଞ୍ଜକରେ ।

—ବାଇଶି—

ସୁନ୍ଦର ସୁନା— ସୀରରେ ବନା
ସ୍ୱର୍ଗକୁ ଜଣେ ସନ୍ତ
ସୁରେଶ ଗୁରୁ ସମରେ ଗୁରୁ
ବଶିଷ୍ଠ ଯତି ପ୍ରଭୃ । ୨୩ ।
ସୁମନ ଯେଣୁ ସହଜେ ତେଣୁ
ସମାନ ଏହୁ କଥା
ସଙ୍ଗରେ ନମେ ରଷିକୁ ପ୍ରେମେ
ନୃପତି ମହାରଥା । ୨୪ ।
ସେ ମହାଭୁଜ କର-ସରୋଜ
ଅଞ୍ଜଳି ଧାରେ କରି,
ସେ ଋଷି ଆଶୀ— ବଚନ ଭାଷି
ବୋଇଲେ ତପସ୍ୱୀ । ୨୫ ।
ସର୍ବ ସଂପଦେ ସଂପୂର୍ଣ୍ଣ . ମଦେ
କମଳା କରେ ଲୀଳା
ଶମନ ଡର ସମାନ ଦର
ଦର୍ଶନେ ତୋର ଗଲା । ୨୬ ।
ଶତ୍ରୁ ଏ ତୋରେ ସମର ପରେ
ଶରଣ ପଦେ ପଶି

---

୨୩—(ଶ୍ଳେଷ) ସୁନାସୀର-ଇନ୍ଦ୍ର; ଉତ୍ତମ ଯୋଦ୍ଧା; ସୁରେଶଗୁରୁ-ବୃହସ୍ପତି; ଗୁରୁ-ଅଧିକ।

୨୪—(ଶ୍ଳେଷ) ସୁମନ-ପଣ୍ଡିତ; ଉତ୍ତମମନବିଶିଷ୍ଟ ଲୋକ,ଦେବତା।

୨୬—କମଳା-ଲକ୍ଷ୍ମୀ ଶମନ-ଯମ; ଦର-ଭୟ।

—ତେଇଶି—

Digitized by srujanika@gmail.com

ସୁତ କଳତ୍ର                ସମେ ପୂରିତ
କିବା ଅଣିମ ସ୍ୱର୍ଗି । ୨୭ ।
ସୁଖେ ଚୋଲଇ                ସୁସ୍ଥରେ ରହୁ
ସ୍ଥିତ ହେଉ ଏ ପଣ
ଶରଣ ରକ୍ଷା                ଶ୍ରୀପଦେ ଭିକ୍ଷା—
କର ଲଭନ୍ତୁ ଜନ । ୨୮ ।
ସ୍ମିତ ବଦନେ                ଭୂପତି ଭଣେ
କିପାଇଁ ଉପଗତ
ଶଶୀ ସମାନ                ସାକ୍ଷାତେ ପୂଣ
ପାପ-ଅନ୍ଧାର ଗତ । ୨୯ ।
ସ୍ମୃତି ଶାସ୍ତ୍ରରେ                ସାଧୁଙ୍କ ବାରେ
ଶ୍ରମ କି ହେଲା ତୁମ୍ଭ
ସତ ଯେ ହେତୁ                ସାଧନେ ଶଙ୍କୁ
କେ ହେଲା ତପୀପାଇଁ । ୩୦ ।
ସୁରଦ୍ୱିଷର                ସଇନ ଦ୍ୱାର
କଲେ କି ଅମଙ୍ଗଳ
ସେନା ସାଜିବ                ସଙ୍ଗତେ ଯିବ
ଦେବି ମୁଁ ପ୍ରତିଫଳ । ୩୧ ।

---

୨୭—କଳତ୍ର-ସ୍ତ୍ରୀ ।

୨୮—ପଣ-ପ୍ରତିଜ୍ଞା, ନିୟମ ।

୨୯—ସ୍ମିତ ବଦନେ--ଦରହାସ ଯୁକ୍ତ ମୁଖରେ । ଭୂପତି--ରାଜା ଭଣେ--କହେ ।

୩୦—ସତ—ଉତ୍ତମ, ପ୍ରଶସ୍ତ; ପ୍ରକୃତରେ; ହେତୁ--ପକ୍ଷ ।

୩୧—ସୁରଦ୍ୱିଷ—ରାକ୍ଷସ । ବାର—ସମୂହ ।

—ଚବଣି—

Digitized by srujanika@gmail.com

ସଘନେ ହସି ସରସେ ଭଷି
ଭଷିଲେ ଏହ୍ୱ ପର
ସୁବାହୁ ବାହୁ ସୂର୍ଯ୍ୟକୁ ସହୁ
ଗର୍ବି ଦେଲ ପର । ୩୨ ।
ସାରିଲ ଅସ୍ତ୍ର ସ୍ମରର ଦସ୍ତ
ବେଦର କାର୍ଯ୍ୟ ଯେତେ
ସଙ୍ଗତେ ଯିବ ଶୁଣି ଏ ଭାବ
ମୁଁ କହୁ ଅଛୁ ଏତେ । ୩୩ ।
ଶକ୍ତି କି ତୋର ସମରେ ତାର
ବଳ କରିବୁ ନାଶ
ସୁସ୍ଥରେ ରହ ଶ୍ରୀରାମେ ଦଅ
ଶୁଭେ ନଲଭ ହାସ । ୩୪ ।
ଶ୍ୱାପ ବରଜ ସାଶ୍ରୁ ତା ଭଜ
ଶ୍ରୀକର ଯୋଡ଼ି କହେ
ଶିଶୁ ମାତର ସୁତଟି ମୋର
ଜାଣ ତପସ୍ୱୀ ଅହେ । ୩୫ ।
ଶତ ବରଷ ଶେଷେ ହରଷ—
ହୋଇ କମଳା–ଯନ୍ତ
ଶ୍ରୀରାମ ରାମ— ଶଶୀକୁ ସମ
ମୋ କୋଳେ ଦେଇଛନ୍ତି । ୩୬ ।

---

୩୩—ଭାବ-ଅଭିପ୍ରାୟ ।
୩୬—ରାମ-ସୁନ୍ଦର, ମନୋହର ।

—ପଶଣି—

Digitized by srujanika@gmail.com

ଶୈଶବ ଭାର ସଙ୍ଗେ ତାହାର
ଖେଳନ୍ତ ଜନ ଯାଇ
ଶୁଦ୍ଧାନ୍ତେ ମୋର ସଡେ କ ତୋର
ସଙ୍ଗତେ ଯିବେ ଧାଇଁ । ୩୭ ।

ସାମାନ୍ୟ ବାଳ ସମର ଖେଳ
ଜାଣିବେ କାହୁଁ ସେ ତ
ସୁବାହୁ ବଳ ସାରିବ କୁଳ
ନ କହ ବିଶ୍ୱାମିତ୍ର । ୩୮ ।

ସହିତ ପତ୍ତ ଶୁଦେଶ ହେ ଯତ୍ତ
ଅଗସ୍ତି ବଳେ ଯିନା
ସାମାନ୍ୟ-ଋଷି ସାହସ ନାଶି
ଅକାରଣରେ କିନା । ୩୯ ।

ଶରଣ ପଶେ ଶକ ଯା' ପାଶେ
ତାକୁ କ ମୋର ବାଳ
ପାରୁ ତୋ ଯଜ୍ଞ ସୁତ ମୋ ଅଜ୍ଞ
ନ ଯିବ ଛାଡ଼ି ଆଳ । ୪୦ ।
ଶୁଣି ଏ ବାଣୀ ଶିରକୁ ଟୁଣି
ତର୍ଜନୀ ଟେକି ରୋଷେ

---

୩୭—ଶୁଦ୍ଧାନ୍ତ-ଅନ୍ତଃପୁର ।

୩୮—ଅଗସ୍ତି ସପ୍ତ ସମୁଦ୍ରକୁ ଚଳୁ କରିଥିବା କଥା ପୁରାଣ ପ୍ରସିଦ୍ଧ ।

୪୦—ଶକ-ଇନ୍ଦ୍ର; ବାଳ-ପୁଅ; ଆଳ-ଘର । ଅଜ୍ଞ-ମୂର୍ଖ ଅର୍ଥାତ୍ ପିଲା ହୋଇଥିବା ଯୋଗୁଁ ଯୁଦ୍ଧ ବିଦ୍ୟାରେ ଅପାରଗ ।

—ଛବିଶି—

Digitized by srujanika@gmail.com

ସ୍ୱର୍ଣ୍ଣଦୀଧିତ ସବୃଣ ଯତ
କୋପନେ ଏଥା ଭ୍ରମେ । ୪୧ ।

ସ୍ୱଯୃମ୍ଭୁ ଜାତ ସଦେହ ନତାନ୍ତ
ବ୍ରାହ୍ମଣ ପଦାଘାତ
ଶୀବସ୍ସ କଳା ଶୁଣିଛ ସିନା
ବାଇ ତୁ ନୃପନାଥ । ୪୨ ।

ସାଧିବ ପଣ ଶ୍ରୀଗ୍ରମ ଅଣ
ଶୂନ୍ୟ-ଶବଦ ଏଥା
ଶିଖାଉ କେତେ ଶାସ୍ତ୍ର ତୁ ମୋତେ
ଶିଷ୍ୟ ଭାବିଲ୍ ଅଥା । ୪୩ ।

ସଗର ନୃପ— ସୁତଙ୍କୁ କୋପ—
ହୋଇ କପିଳ ଋଷି
ସମୂଳେ ପାଂଶ ସାକେତ-ଈଶ
କଲେ, କ ଭାବୁ ବସି । ୪୪ ।

ସରିବ ଗର୍ବ ଶିଘ୍ର ସରବ
ଗୃହିଁଲେ ନେଵ କୋଣେ
ସତ ନମଣି ଶିଖାଉ ପୁଣି
ସୁମନ ପର ଏଣେ । ୪୫ ।

---

୪୧—ସେପେ-ସ୍ୱଗରେ; ତର୍ଜଣୀ—ବଣିଅଙ୍ଗୁଠି; ସ୍ୱର୍ଣ୍ଣଦୀଧିତ—ଅଗ୍ନି ।

୪୨—ସ୍ୱୟମ୍ଭୁ ଜାତ-ବକ୍ଷୁ । ଶୀବସ୍ସ ବକ୍ଷୁଙ୍କୁ ପଦାଘାତ କରିଥିବା କଥା ପୁରାଣରେ ଅନୁସନ୍ଧେୟ ।

୪୫—ସୁମନ—ପଣ୍ଡିତ ।

ସୁବେଉଇଣି—

Purchased with the assistance ... of India Under the ... Financial Assistance Scheme ... Educational

Digitized by srujanika@gmail.com

ସାକ୍ଷାତେ ବ୍ରହ୍ମ ସମ୍ଭବ ରାମ
କୁମର ତୁଚେ ତୋର ।
ସଂକଳ୍ପ କର ସେହୁ ଶ୍ରୀହର
ହୋଇଲେ ଅବତାର । ୪୬ ।

ଶାଣ–ମାର୍ଗଣ— ଶକତ ଜାଣ
ଶାସିବ ତାହାଙ୍କର
ସଂସାରେ ଯେତେ ଶିଷ୍ଟ–ଅହିତେ
ହୋଇବେ ନାରଖାର । ୪୭ ।

ସ୍ୱଧର୍ମ ସ୍ଥାପି ସାରୂପ୍ୟ ତପୀ
ଲଭିବେ ଦରଶନେ
ସାମାନ୍ୟ ନର ସୁତକୁ ତୋର
ନମଣ ରାଜା ମନେ । ୪୮ ।

ସ୍ୱଭାବେ ମୂକ ସୂର୍ଯ୍ୟବଂଶୀକ
କଂପିଲେ ଋଷିବର
ସ୍ୱୟମ୍ଭୂ ସୁତ ସେ ତପୋବନ୍ତ
ବଶିଷ୍ଠ ବୋଲେ ଗୀର । ୪୯ ।

ସମ୍ଭାଳ କୋପ ସାତ୍ତ୍ୱିକ ରୂପ
ହେ ସିନ୍ଧୁ କୂଳମଣି
ସହଜ ପାରେ ସବତା ଥରେ
କୋପିଲେ, ତମ ଗୁଣି । ୫୦ ।

---

୪୭—ଶାଣ ମାର୍ଗଣ–ଶାଣିତ ବାଣ; ଅହିତେ–ଶତ୍ରୁମାନେ ।
୪୮—ସାରୂପ୍ୟ–ମୁକ୍ତି ବିଶେଷ ।

—ଅଠେଇଶି—

Digitized by srujanika@gmail.com

ସାଗର ଧରା  ସ୍ୱାମି ହେ ଭୂମ
ଦଅ ଶ୍ରୀରଘୁନାଥ
ଶିଷ୍ୟଙ୍କୁ ଦେଇତେ  ଶାସ୍ତ୍ର ଜଗତେ
ଜାଣନ୍ତୁ ତପୋବନ୍ତ । ୫୧ ।

ସର୍ବୋଜ୍ଜାସନ  ସମ ସୁଜ୍ଞାନ-
ପୂରିତ ଏହାଙ୍କର
ସରସେ ଖରେ  ସୁତଙ୍କୁ କରେ
ଦଅ ହେ ନୃପବର । ୫୨ ।

ସାନ ବାଳକ  ପ୍ରଜାପାଳକ
ନୁହନ୍ତି ସୁତ ମୋର
ସ୍ୱାହା ଜୀବନ  ଭସ୍ମେ ଆଚ୍ଛନ
ହେଲେ କି ହୁଏ ସ୍ଥିର ? । ୫୩ ।

ସମିଧ ଦେଲେ  ସେ ଯଥା ଜଳେ
ବଢ଼ାଏ ପ୍ରଜ୍ଜ୍ୱ ତାର
ଶଲଭ ତୁଲ  ଅସୁର କୁଳ
ନାଶିବେ ରଘୁବର । ୫୪ ।

ସନ୍ଧ୍ୟ ଏ ବାଣୀ  ରାଘବ ପୁଣି
ମିଳିଲେ ଆସି ତୀର
ସିନ୍ଧୁ ସମାନ  ସେ ସଜ୍ଜ ସ୍ଥାନ
ସୌମିତ୍ରୀ ସଙ୍ଗତର । ୫୫ ।

---

୫୨—ସର୍ବୋଜାସନ–ବ୍ରହ୍ମା ।

୫୪—ସମିଧ–କାଠ; ଶଲଭ–ପତଙ୍ଗାଦି ।

୫୫—(ଶ୍ଳେଷ) ରାଘବ–ମତ୍ସ୍ୟବିଶେଷ, ରାମଚନ୍ଦ୍ର ।

—ଅଣତରଙ୍ଗ—

Digitized by srujanika@gmail.com

ସେ ଖେଦ-ତମି— ଗ୍ରସ୍ତରେ ସ୍ୱାମୀ
ଅଯୋଧ୍ୟା ନଗରୀର
ସୁଛେ ଅରପି କଦନ୍ତ କୋପି
ନ ହୁଅ ରକ୍ଷିବର । ୫୬ ।
ଶୀଘ୍ରେ ରାଘବ ସୌମିତ୍ରୀ ଜବ
ଜନନୀ ପାଶେ ଯାଇ
ସକଳ କହି ସରସେ ଭାଇ
ସଙ୍ଗତେ ରଘୁସାଇଁ । ୫୭ ।
ସାଜିଲେ ବେଶ ସୁରଷ୍ଟି ନାଶ—
ଭକତ ଯାହା ଦେଖି
ସାଶ୍ରୁ ନୟନେ ଶ୍ରୀରାମେ ଅନେ
ନୃପତି ଦେଲେ ଟେକି । ୫୮ ।
ଶୁଦ୍ଧାନ୍ତ ନାରୀ ଶୁଣି ବାହାର
ହୋଇଲେ ଅଶ୍ରୁମୁଖୀ
ସୁମନା କେହି ଶୁଭ ବାଞ୍ଛଇ
କେବା ହୋଇଲା ଦୁଃଖୀ । ୫୯ ।
ଷାଠିଏ ପଦ ସୁଧୀ ପ୍ରମୋଦ—
କୁମୁଦ-ଶଶଧର
ସୁଖେ ଗ୍ରାନ୍ଥିକ କରନ୍ତୁ ଠିକ
ଅଙ୍କ ବପଦକର । ୬୦ ।

---

୫୬—ଖେଦ-ତମି-ଖେଦ ସ୍ୱଭାବ ବା ଦୁଃଖ ପ୍ରକାଶ ହିଁ ତମି ହେଲା।

୫୭—ଜବ-ଶୀଘ୍ର ।

୬୦—(ରୂପକ) ସୁଧୀ ପ୍ରମୋଦ କୁମୁଦ ଶଶଧର—ପଣ୍ଡିତମାନଙ୍କ ଆନନ୍ଦ ରୂପ କୁମୁଦର ଚନ୍ଦ୍ର ।

—ତରଣି—

Digitized by srujanika@gmail.com

# ସର୍ଗ ତିନି

ରାଗ—ଆଷାଢ଼ ଶୁକ୍ଳ

## —ସିଦ୍ଧାଶ୍ରମ ବର୍ଣ୍ଣନ ଓ ତାଡ଼କା ବଧ—

ମାଧବ ରାଘବ ମଧୁ-ଚରିତ
ସଂସାର ତାପକୁ ସୁଧା-ସରିତ
ସିନ୍ଧୁ ସମ ପାପ-କଷ୍ଟ-ଭଯ୍ୟକୁ
ସଂହାରିବ ତାପ ଦୁଃଖ ଚଯ୍ୟକୁ
ସାଙ୍ଗି ଅନ୍ତ ପାଇଁ
ଶମନ ଡର ପଳାଇବ କାହିଁ । ୧ ।

ସିଂହଦ୍ୱାରେ ବଜେ ବ୍ରହ୍ମାଣ୍ଡଧର
ମାନ ସଙ୍ଗେ ରଙ୍ଗେ ଦାଣ୍ଡେ ବାହାର
ସୁମନଶରଜିତ ରୂପ ଦେଖି
ସୁନୀଳକେଶା ବୁଜ ଦେଲେ ଆଖି
ସେ କପଟ ମନ
ସୁଦ୍ଧ ଏପରି ଋଷିଙ୍କ ଗହଣ । ୨ ।

ଶୁକଳକେଶା ତରୁଣୀ ନିକର
ଶ୍ରୀମୁଖ ଶୁଖାଇ ଦେଲେ ସତ୍ୱର
ସତେ ଜନନୀ ମନ କ ସହ୍ଲାଦ
ଶିଷ୍ଯା ଭେଲକ ମନ୍ତର ଟେକ ଦେଲ
ସୁଖେ ଏ ନନ୍ଦନ—
ସୁନା ଦେଲେ ତପୀ ଦସ୍ୟୁ ସମାନ । ୩ ।

—ଏକତାଳୀ—

Digitized by srujanika@gmail.com

ସୁରଜ୍ୟେଷ୍ଠ ସଙ୍ଗେ କି ହରିହର
ଶଶୀ ବଡ଼ୋଜା ଗୁରୁ ସଙ୍ଗତର
ସନ୍ଧ୍ୟାକାଳେ ମିଳି ସରଯୂ କୂଳେ
ସାରିଲେ ସାନ୍ଧ୍ୟବନ୍ଦନା ଚଞ୍ଚଳେ
ଶେଷ ହେଲା ରାତି
ସଧୀରେ ବନେ ଗଲେ ସଙ୍ଗେ ଯତି । ୪ ।

ସୁରତ-ରଙ୍ଗିଣୀ ସମାନ ବନ
ଶ୍ରୀରାମର କଲା ମନ ପ୍ରସନ୍ନ
ଶଇଳ-ଉରଜା ତମାଲ-କେଶୀ
ସୁହାସୀ କୁମୁଦ-ହାସେ ବିଶେଷି
ଶ୍ରୀପଦେ ନିର୍ଝର
ସଜେ ନୂପୁର-ନିକ୍ୱଣ ମଧୁର । ୫ ।

ସୁପର୍ଣ୍ଣ ଅରୁଣ ଶୋଭାରେ କାହିଁ
ସୁଗ-ପ୍ରକୃତି ବନତା ବୋଲାଇ
ସଉଧ ସଦନେ କି ରାଜପୁର
ସୁଶୀଳା ଗଣ ସହଚରୀ ବାର
ସଙ୍ଗୀତଶାଳା କି
ଶୁକର କବିତା ଗାଏ ନାହିଁକି । ୬ ।

---

୪—ବଡ଼ୋଜା-ଇନ୍ଦ୍ର; ଗୁରୁ-ବୃହସ୍ପତି ।

୫—(ରୂପକ) ସୁରତ-ରଙ୍ଗିଣୀ-ସ୍ତ୍ରୀ; ଶୈଳଉରଜା-ପର୍ବତସ୍ତନା; ପର୍ବତହିଁ ଉରଜ ଯାହାର; ତମାଲ କେଶୀ-ତମାଲ କେଶତୁଲ୍ୟ ଯାହାର; କୁମୁଦ ହାସୀ-କୁମୁଦହିଁ ହାସ ଯାହାର; ସୁହାସୀ-ସ୍ତ୍ରୀ ।

୬—(ଶ୍ଳେଷ) ବନ ବନତାତୁଲ୍ୟ-ଅରୁଣ ସୁପର୍ଣ୍ଣ-ଗରୁଡ଼ ଓ ଅରୁଣ; ରକ୍ତବର୍ଣ୍ଣ ବିଶିଷ୍ଟ ଉତ୍ତମ ପତ୍ର; ପଲ୍ଲବ ଇତ୍ୟାଦି । ସଉଧ ସଦନ-ରୂପି

—ବଢଣି—

Digitized by srujanika@gmail.com

ସୁରଋଷି ସଭ୍ର ପର୍ଯ୍ୟେ ଦଶେ
ଶଇଳ ଭରଦ୍ୱାଜ କୌଶିକ ସେ
ସ୍ଥାଣୁ ଥିବାରୁ କଇଲାସ ପୁର
ସୁଖେ ଗିରିଜା ବିହାର ସୁନ୍ଦର
ସାକ୍ଷାତ ଦର୍ଶନ
ଶ୍ୟାମ ବପୁ ଲଭ୍ ହରଷ ମନ । ୭ ।

ସରଳ ପଥ ତେଜି ଋଷିବର
ସଘନ ବିନେ ଅତ ଭୟଙ୍କର
ଶଙ୍କା ଶତେ ଏଣେ ତେଣେ ଅନାଇଁ
ଶାନ୍ତ ଭାବେ ଋମେ କହୁ ମନାଇଁ
ସଙ୍କୁଳ ତ ସବୁ
ସାରବ ବୃକ୍ଷସୀ ଜୀବନ ବାବୁ । ୮ ।

ସଙ୍ଗ ଛାଡ଼ିଲେ ଭୁଲିଗଲି ମୁଁ ପଥ
ସାକ୍ଷାତେ ତାଡ଼କା ବାସ ଏହୁ ତ
ଶୁର୍ଙ୍ଗ ସେ ଜାଣିବି ମନୁଷ୍ୟ ଗତ
ଶେଷ ତନହେଁ ଏଥି ରଘୁପତ
ଶାଣ ବାଣଧର
ଶଙ୍କା ତେଜି ମନୁଁ ବୋଇଲେ ଗିର । ୯ ।

---

ଅନ୍ତ୍ରମ; କୋଠାଘର । ସୁଣିଳାଗଣ-ଉତ୍ତମ ପଥର ଖଣ୍ଡ ସବୁ, ସ୍ତ୍ରୀମାନେ । ସନ୍ତଚସ୍ୱାବାର-ସର୍ଦିମାନେ; ଦାସକେରେଣ୍ଟା ବୃକ୍ଷସବୁ । ସଙ୍ଗୀତଶାଳା-ସଙ୍ଗୀତଗୃହ । ଶୁକବ-ଶୁଆ, ଉତ୍ତମ କବ ।

୭—(ଶ୍ଳେଷ), ବନ ସୁରଋଷି ( ଦେବର୍ଷି ) ସଭ୍ୟପର । ଶଇଳ-ପର୍ବତ ଓ ଋଷି ବିଶେଷ । ଭରଦ୍ୱାଜ-ଭଦଳଅପକ୍ଷୀ, ଋଷି ବିଶେଷ;

—ତେତଶି—

Digitized by srujanika@gmail.com

ଶିଶୁ ବୋଲି ଯେବେ ଜାଣିଛ ମୋତେ
ସଭାରେ ପିତା ପାଶେ ନାନାମତେ
ଶୁଣିଛୁ ପ୍ରଶଂସା କରିଛ ଯେତେ
ସତ୍ୟ ନ କହନ୍ତି ମହର୍ଷି ଯୂଥେ
ସଂସାରେ ଏପରି
ସାତ୍ତ୍ୱିକ ଭାବ ରହିଅଛୁ ପୂରି । ୧୦ ।

ସୂର୍ଯ୍ୟକୁଳ ଚୂଡ଼ାମଣି ବଚନେ
ସସ୍ମିତେ ଋଷି ରହିଲେ ମଉନେ
ଶୂନ୍ୟେ ଶୁଭିଲା ଏକାଳେ ଶବଦ
ଶତକୋଟି କୋଟି ହେଲା କି ନାଦ
ସାଗର ସକଳ
ଶେଷ କାଳେ କି ହୋଇଲା ଉଲ୍ଲୋଳ । ୧୧ ।

ସର୍ପ ଫୁତ୍କାର ନାସାବିଳ ଦ୍ୱାରେ
ଶ୍ୱାସ ବହି ଆସୁଛି କି ପ୍ରଖରେ
ଶଇଳ ଶୃଙ୍ଗ କି ଦଶଇ ଦନ୍ତୁ
ଶରୀରୁ ଝର-ଝାଳ ଆଗମନ୍ତୁ
ସତେ କି ଗହ୍ୱର
ସୁବିସ୍ତୃତ ମୁଖ କି ଭୟଙ୍କର ! ।୧୨ ।

---

କୌଶିକ-ପେରୁ; ଋଷି ବିଶେଷ । ବନ କୈଳାସପରି । ସ୍ଥାଣୁ-ଶିବ; ଲଣ୍ଡା ବୃକ୍ଷ; ଗିରିଜା-ପାର୍ବତୀ, ଗିରିଜାତ ଶୃଙ୍ଗ ।

୧୧—ଶତକୋଟି-ବଜ୍ର; ଉଲ୍ଲୋଳ-ଚଞ୍ଚଳ ।

—ତତ୍ତ୍ୱତରଣି—

Digitized by srujanika@gmail.com

ଶାର୍ଦ୍ଦୂଳ ପ୍ରାୟେ ରେରେକାର ଘୋଷ
ଯେ ଏଠ ଦାବାନଳ ଜିହ୍ୱା ପ୍ରକାଶ
ସରଳ ଶିଶୁରେ ତୋର ଅସୂଷ
ଶମନ ସଙ୍ଗେ ଯୁଝିବାକୁ ଅଶ
ସହଜେ ବିନାଶ
ଶରଣ କାହିଁ ରଖିବେ ନିଦଶ । ୧୩ ।
ସକମ୍ପେ ଋଷି ବୋଲୁଛନ୍ତି ବାଣୀ
ସୁବାହୁ ମାତା ଅସିଲଣି ଜାଣି
ଶତ ଶତହ୍ରଦା–ଜ୍ୟୋତି–ତରଙ୍ଗ
ଶ୍ୟାମ ବନେ ଖେଳିଲଣି ଶ୍ରୀରଙ୍ଗ
ଶର ଧନୁ ଧର
ସତ୍ୱର ନୋହିଲେ ପ୍ରାଣ ଅସ୍ଥିର । ୧୪ ।
ଶ୍ରବଣ ପାଶେ କମ୍ପେ ହେଲା ନାଦ
ଶିଶୁ କେ ରେ ତୁ ବାନ୍ଧିଲୁ ବିବାଦ
ସାଗର ତରିବୁ କରୁଛୁ ଆଶା
ଶୂନ୍ୟେ ସୌଧ ତୋଳିବାକୁ ଭରସା
ଶଙ୍କ ହୁଏ ଅଡ଼
ଶୃଗାଳ ବାଣ୍ଟିବେ ତୋ ମାଂସ ହାଡ଼ । ୧୫ ।
ଶଇଳ ଶାର୍ଖା କରିଲା ବର୍ଷଣ
ସାକ୍ଷାତେ କାମଦସ୍ୱୀ ବଡ଼ଜଣ
ଶୂନ୍ୟେ କୁଜ୍‌ଝଟିକା ଘୋଟିଲା ପର
ସକାଳ ହେଲା ରଜନୀ ଯେପର
ଶୁଭେ ମଡ଼ ମଡ଼
ଶୂନ୍ୟ ପଡ଼ିଲ ଗିର ବଡ଼ ବଡ଼ । ୧୬ ।

—ପଞ୍ଚତରଣି—

Digitized by srujanika@gmail.com

ସୁତୀକ୍ଷ୍ଣ ଶର ମାର ରଘୁନାଥ
ସାରିଲ ରାକ୍ଷସୀ ଏବେ ଜୀବତ
ସ୍ତ୍ରିଗ୍ର ହତ୍ୟା ହେବ ବୋଇଲେ ରାମ
ଶୁଣି ଭାଷନ୍ତି ତପସ୍ୱୀ-ସତ୍ତମ
ଶତ୍ରୁ ଜଗତର
ଶାସ୍ତ୍ର ରୀତ କିବା ବିଗୁର କର । ୧୭ ।

ଶାଣ ମାର୍ଗଣ ଯୋଚି ଦାଶରଥି
ଶଶୀଅର୍ଦ୍ଧ ଶର ଗୁଣେ ଧରନ୍ତି
ଶ୍ରୁତି ମୂଳ ଯାଏଁ ଅଣିଲେ ଟାଣି
ଶତ ସିଂହ ତେଜୁ ବଳିଲ ଠାଣି
ସେ ଯେ ଦୀର୍ଘ ରଡ଼ି
ସତେ ପ୍ରଳୟ ଘନ ଘଡ଼ଘଡ଼ି । ୧୮ ।

ସାନ ବୋଲି ଜ୍ଞାନହୀନତା ଏତେ
ସାନ ଶିଳା ସିନା ପର୍ବତ ଗଢ଼େ
ସାନ ଧୂଳି କଣା ହେଲେ ଏକତ୍ର
ସରଜେ ସୁବିଶାଳ ମରୁ ସତ
ଶମ୍ବର କଣିକା
ସୁନୀଳ ଅମ୍ବୁରାଶି ଗଢ଼େ ଏକା । ୧୯ ।

ସୁଦୀର୍ଘେ କହ୍ଲ ବନ୍ଧ ଦେଲେ ବାଣ
ଶିର ଛିଣ୍ଡି ତଳେ ପଡ଼ିଲ ଜାଣ
ଶାଳ ମହୀରୁହ ହେଲ କି ଛିନ୍ନ
ସନ୍ଧ୍ୟରେ ତେଜ ପ୍ରକାଶିଲ ପୁନ
ଶ୍ରୀଚରଣ ପ୍ରାନ୍ତେ
ସାକ୍ଷାତେ ମିଶିଗଲା ଅବାରିତେ । ୨୦ ।

—ଛତିଶି—

Digitized by srujanika@gmail.com

ସୁମନେ ସୁମନ କଲେ ବରଷା
ଶାନ୍ତ ମନ୍ଦଭଦ୍ର ବନ୍ଧିଲ ବସା
ଶରଣାଗତରକ୍ଷଣ–ଚରଣ
ମୁନି ଗାଧିଜ ଅଷ୍ଟାଙ୍ଗ ମଗନ
ସାକ୍ଷାତ ଏ ବ୍ରହ୍ମ
ସାରୂପ୍ୟ ଦେବେ ଲଭିଲେ ଜନମ । ୨୧ ।

ଶରୀରେ ଅବତାର ଲୀଳାରୋପ
ସୁଲକ୍ଷଣେ ମୀନଗୃଧ୍ୟାଦି ରୋପ
ସଦା ମନ୍ଦର ତାଡ଼ନେ ବଳିଷ୍ଠ
ସୁବପ୍ରହବରେ ହେଲେଣି ଶ୍ରେଷ୍ଠ
ସୁବାସ ହିରଣ୍ୟ
ସତତ କାନ୍ତ କରନ୍ତ ଗଞ୍ଜନ । ୨୨ ।

ସହସ୍ର କର ବର୍ଣ୍ଣରେ ବିଜିତ
ସୁକାନ୍ତ କୃଷ୍ଣ ପଦ ଅଙ୍ଗୀକୃତ
ସଙ୍ଗ ବଳତ ହୋଇଛନ୍ତି ସହିଁକେ
ସୁବୁଦ୍ଧି ବୁଦ୍ଧଭାବ ଭାବ ଜପୁଛନ୍ତି
ଶାପୃକ ଶ୍ରୀକର
ସହଜେ ଗନ୍ଧର୍ବ ଗତ ପ୍ରଖର । ୨୩ ।

---

୨୨ ଓ ୨୩—(ଯୁଗ୍ମକ) ଶ୍ରୀରାମଙ୍କ ଶରୀରରେ ଦଶାବତାର ଲୀଳା ଅରୋପକରା ଯାଇଛି ।

ସୁଲକ୍ଷଣରେ–ଉତ୍ତମ ଲକ୍ଷଣରେ; ମହାପୁରୁଷ ଲକ୍ଷଣରେ । ମୀନ ଗୃଧ୍ୟାଦିରୋପ–ମତ୍ସ୍ୟଗୃଧ୍ରଶରୀର (ମୀନାବତାର) । ମନ୍ଦର–ମନ୍ଦରପର୍ବତର

—ସତତରଙ୍ଗୀ—

Digitized by srujanika@gmail.com

ସାକେତ ଭୂପତ ଭାଗ୍ୟ କେସନ
ସୁତ ରୂପେ ଲଭେ ରମାରମଣ
ସୌଭାଗ୍ୟ ମୋହର ହେବ ଏପର
ଶିଷ୍ୟରୂପେ ଶ୍ରୀ ନାରାୟଣେ ବର
ଶିଖାଇବି ବସି
ଶାରଦାପ୍ରିୟେ ଦେବ ବିଦ୍ୟା ରାଶି । ୨୪ ।

ଶୁଚିବନ୍ତ ହୋଇ ସେକ୍ଷଣି ବସି
ସ୍ମୃତେ ଶ୍ରୀରାମଚନ୍ଦ୍ରେ ଗିର ଭାଷି
ଶିଖାମଣି ହେ କ୍ଷତ୍ରିୟ କୁଳର
ଶିଖ ଏ ବିଦ୍ୟା ଦେବେ ସାଧିବାର
ଶ୍ରୁତିମୂଳେ ଋଷି
ସରସେ ବଳା ଅତିବଳା ଭାଷି । ୨୫ ।

ସାୟଂକାଳେ ଆଶ୍ରମରେ ପ୍ରବେଶ
ସାରିଲେ ସାନ୍ଧ୍ୟକୃତ୍ୟ ଋଷିଈଶ
ଶାଳପର୍ଣ୍ଣ ପାତେ ହରଷ ମନ
ସୁକନ୍ଦମୂଳ କରିଲେ ଅର୍ପଣ
ସୌମିତ୍ରୀ ସହିତ
ସାରିଲେ ମନୋହାରୀ ଶ୍ରୀରଘୁନାଥ । ୨୬ ।

---

ତାଡ଼ନେ–ଗଞ୍ଜନରେ, ତାଡ଼ିବା ଦ୍ୱାରା; ମନ୍ଦର ପର୍ବତତ୍ରପୃଷ୍ଠନରେ (କୂର୍ମ) ସୁବରାହବରେ–ସୁନ୍ଦର ବରାହ ଶ୍ରେଷ୍ଠରୂପରେ; ଉତ୍ତମ ଶ୍ରେଷ୍ଠ ଯୁଦ୍ଧରେ (ବରାହ) । ସୁବାସ–ଉତ୍ତମ ବସ୍ତ୍ର; ହିରଣ୍ୟ–ସୁନା ଓ ରାକ୍ଷସ (ନରସିଂହ) ସହସ୍ର କର–ସୂର୍ଯ୍ୟ, ସହସ୍ରାର୍ଜ୍ଜୁନ । ରଜତ–ଜଣିଥିବା (ପରଶୁରାମ) ସୁକାନ୍ତ–

—ଅଠତରଣି—

ଶ୍ୟାମବନେ ଖେଳ ଗଲ୍ପ ବାରତା
ସ୍ୱାଗତ କଲେ ସ୍ୱମେ ଊର୍ଦ୍ଧ୍ୱରେତା
ସଗର୍ବେ ହରଷେ ବାଞ୍ଛା ଅଗ୍ରିତ
ସୁମନେ ସ୍ୱାମୀଙ୍କେ କହୁ ଭୁଷ
ସୁଖେ ଯଜ୍ଞ କର
ସୁବଦ୍ଧି ଷେ ନାଶିବେ ରଘୁବର । ୧୭ ।

ଶୁଭେ ପ୍ରଭୃତ ହୁଅନ୍ତେ ପ୍ରବେଶ
ସମ୍ରାଟ୍ ସଙ୍କାଶ ତପସ୍ୱୀ-ଈଶ
ସ୍ଥଣ୍ଡିଳ କାଟି ଯବ ତଳ ଠୂଳ
ସମିଧ କୁଶ ଅବର ତଣ୍ଡୁଳ
ସନ୍ନ୍ୟାସୀଏ ମିଶି
ସାମ ଗାନ କଲେ ଓଁକାର ଘୋଷି । ୧୮ ।

ସୁବାହୁ ମାରୀଚ ତାଡ଼କା ସୁତ
ଶୂନ୍ୟେ କାହିଁଥିଲେ ସେହୁ ଦଇତ
ଶିକାରୀ ଘଣ୍ଟି ଶୁଣି ଯଥା କର୍ଣ୍ଣେ
ଶୀଘ୍ରେ ଆସନ୍ତି କୁରଙ୍ଗମ ଗଣେ
ଶାଣବାଣି ମାରି
ସୁଖେ ମୃଗୟୁ ନାଏ ଭାର କରି । ୧୯ ।

---

ଦବ୍ୟତେଜ; କୃଷ୍ଣପର-କଳାବର୍ଣ୍ଣ ବା ଶାଳରୂପ ବସ୍ତୁଙ୍କ ପର । ବଳ-ବଳଗ୍ରାମ ଓ ଶାଗରକବଳ (ବଳସ୍ୱାମ) ସୁବୁଦ୍ଧି-ଉତ୍ତମବୁଦ୍ଧି; ବୁଦ୍ଧଭୁବ-ବୌଦ୍ଧ ଅବତାରତ୍ୱ ଓ ପାଣ୍ଡିତ୍ୟ (ବୌଦ୍ଧ) ସାୟକ-ଶର ଓ ଖଡ୍ଗ; ଗନ୍ଧର୍ବ-ଘୋଡ଼ା, ଦେବଯୋନ ବଶେଷ (କଲ୍କି) ।

—ଅଣଗ୍ଳଶି—

Digitized by srujanika@gmail.com

ସ୍ୱାହା ଶ୍ରବଣେ ସେକ୍ଷଣି ରାକ୍ଷସ
ଶୂନ୍ୟଁ ନିକ୍ଷେପିଲେ ମୂଳ ପୁଷ୍ପକ
ଶୁଣ୍ଡ ପରି କର ବୁଲାଇ ଦେଲେ
ଶ୍ରୁବ ସ୍ରୁଚ ଆଜ୍ୟ ଛଡ଼ାଇ ନେଲେ
ସାକ୍ଷୀ ରଘୁନାଥ
ଶର ମାଇଲେ ଖରେ ଶୂନ୍ୟ ପଥ । ୩୦ ।

ପଇନଗଣ ଗୋଟି ଗୋଟି ତଳେ
ଶାଳବୃକ୍ଷ ପରି ଶୋଇଲେ ହେଳେ
ଶେଷେ ସୁବାହୁ ଛାଡ଼ିଲା ହୁଙ୍କାର
ସ୍ୱର୍ଣ୍ଣଦୀପ୍ତ ଶରେ ରଘୁବର
ସାରିଲେ ଅପୂର୍ବ
ସର୍ବେ ଦେଖିଲେ ସେ ହେଲା ପାଉଁଶ । ୩୧ ।

ଶ୍ରୀରାମଙ୍କୁ ଦେଖି ମାରୀଚ ଅସେ
ସ୍ମିତେ କହେ ଶିଶୁ କେଡେ ସାହସେ
ଶୂନ୍ୟେ ସୌଧ ତୋଳି ଦେଲୁ ରେ ମୂଢ଼
ସାଗର ଶୋଷିଲୁ ସାହସ ବଡ଼
ସିଂହ ଯେ କ୍ଷୁଧାର୍ତ୍ତି
ସତେ ପିଞ୍ଜରେ କରିଲୁ ଆବୃତ୍ତ । ୩୨ ।

ସୁଧା ମଣିରୁ କି କାଳକୂଟକୁ
ଶଇଳ ଅଣୁରୁ ଶିର ତଟକୁ
ସିନ୍ଧୁ ତରିବାକୁ ଏଡ଼େ ସାହସ
ଶିଳା ବାନ୍ଧ ଗଲ ଦେଖେ ସରସ
ସରବ ଅପୂର୍ବ
ସମର-ଯଜ୍ଞରେ ଦଅନ୍ତେ ହାସ । ୩୩ ।

—ଚୂଳଣି—

Digitized by srujanika@gmail.com

## ଗୀତା ପ୍ରେମ ତରଙ୍ଗିଣୀ

ସମୀରଣ–ଶସ୍ତ୍ର ଯୋଗଣ ଖରେ
ସନ୍ଧଲେ ରାଘବ କ୍ରୋଧ ଶତ୍ରୁରେ
ଶୁନ୍ୟେ ଉଡ଼ାଇ ନେଲ ଯାତୁଧାନେ
ସିନ୍ଧୁ ଦକ୍ଷିଣ ତୀର ସନ୍ନିଧାନେ
ଶକ୍ତିହୀନ ହୋଇ
ସଖୀ ଶୁଚେନ୍ୟ ଦୈତ୍ୟ ଦୁଃଖରେ ରହି । ୩୪ ।

ସୁମନ୍ତ ମାନ ତହୁଁ ଘନ ଘନ
ସୁଖେ ଉଚ୍ଚାରିଲେ ତପସ୍ୱୀ ଗଣ
ସୁକ୍ତ ଓଁକାରେ ପୂରିଗଲା ବନ
ସୁତ ଗାଧିଙ୍କର ଅନନ୍ଦ ମନ
ସାରିଲେ ବିଧାନ
ଶୁଭ ବେଳେ ପୂର୍ଣ୍ଣାହୁତି ପ୍ରଦାନ । ୩୫ ।

ସୁନାସୀର ସୁର ନାସ୍ୱ ଗନ୍ଧର୍ବେ
ସଙ୍ଗୀତ ଗାଇଲେ ହରଷ ମନେ
ସୁଶୀତଳ ହୋଇ ବହିଲେ ବାତ
ସୁଖ୍ୟାତ ହେଲ ରାମ ମହିମା ତ
ଶୁଭେ ଜୟ ଜୟ
ସତ୍ୟ ଶିବଦ ପ୍ରଭୁ ଅପ୍ରମେୟ । ୩୬ ।

ସୁରଭିମାଲ୍ୟ ଆଭରଣଧାରୀ
ସଦା ବନ୍ଦନ ଚର୍ଚ୍ଚିତ ମୁରାରି
ଶ୍ୟାମଳ ବପୁ ଗୀତା–ଜୀବାଧନ
ଶ୍ରୀପଦ ଶତଦଳେ ନିଶିଦିନ
ଷଟ୍‌ପଦ ତୁଲ
ସଦା ମକରନ୍ଦ ଗ୍ରାହୀଙ୍କ ମୂଳ । ୩୭ ।

—ଏକବିଂଶ ଲହରୀ—

Digitized by srujanika@gmail.com

# ସର୍ଗ ଚାରି

ରାଗ—କାମୋଦୀ

## —ଅହଲ୍ୟା ଶାପମୋଚନ ଓ ମିଥିଳା ପ୍ରବେଶ—

ଶୁଣ ବୁଧ-ସାରସ            ସାବଧାନେ ଏ ରସ
ସୁର୍ଣ୍ଣ—ନନ୍ଦନ ଯୁଗଳରେ
ସକଳ କଲମଷ—            ବଶ ହୋଇବ ଧ୍ୱଂସ
ପଦଟି ଗଦ୍ୟ ସମାନରେ ହେ
ସୁଧୀବର ·
ଶେଷ ରଜନୀ ଉତପର
ସ୍ଫୁଟ କୁ କୁଟ ଗଣ ସ୍ୱର
ସରସିଜ ନୟନା            ସେ ଅଳେକ ନନ୍ଦନା
ତୃଷା ବଜୟୁ ଆକାଶର ହେ ।

୨

ସୁଖଞ୍ଜନ-ନୟନ            ଶୋଭେ ଭ୍ରମରାଞ୍ଜନ
ସଚେତ ପତତ୍ରୀ କୁଳ କଳ—
ସ୍ୱନଟି କଣି କଣି            କଟି ତଟେ କଂକଣୀ
ଶବଦ ଶୁଭେ ମୃଦୁତର ହେ
ସୁଧୀବର

---

୧—ସ୍ୱର୍ଣ୍ଣ ନନ୍ଦନ-କର୍ଣ୍ଣ-କାନ; ଯୁଗଳରେ-ଦୁଇଟିରେ (ଲକ୍ଷିତ-ଲକ୍ଷଣା) ବୁଧ ସାରସ-ପଣ୍ଡିତମାନଙ୍କ ମଧ୍ୟରେ ରସିକ । ସ୍ଫୁଟ-ପ୍ରକାଶିତ । ସରସିଜ ନୟନା-ପଦ୍ମ ନେତ୍ରା ।

—ବ୍ୟାଳଣି—

Digitized by srujanika@gmail.com

# ସୀତା ପ୍ରେମ ତରଙ୍ଗିଣୀ

ଶ୍ୟାମଳ ଶାଟ୍ଟୀ କଳେବର
ସୁରଙ୍ଗ ପ୍ରବାଳ ଅଧର
ସୁମନ-ହାସେ ସ୍ମିତ    ଶ୍ରୀମୁଖେ ବିରାଜିତ
ସ୍ୱାଗତ କଳ କଣ୍ଠ ସ୍ୱର ହେ ।

୩

ଶିବକୁମାର ପର    ସୁ ପ୍ରଭାତ କ ସର
ସତେ ତାରକା-ନିସୂଦନ
ସୁନିର୍ମଳରେ ବାତ—    ସ୍ୱନ କ ଜୟଗୀତ
ସମ୍ଭାଷେ ହରିଙ୍କି ବଦନ ହେ
ସୁଧାବର
ସଭ୍ର ଅଗସ୍ତି ତତପର
ସେ କଉଶିକ ଦ୍ୱିଜପର
ସଙ୍ଗତେ ଭରଦ୍ୱାଜ    ଶଇଳ ଅଧ ହେଜ
ସାକ୍ଷାତ ଗନ୍ଧର୍ବ ନିକର ହେ ।

---

୨—ପତତ୍ରୀ-ପକ୍ଷୀ; କଳ-କାକଳି;ଶାଟ୍ଟୀ-ଶାଢ଼ୀ;ପ୍ରବାଳ-ପୋହଳା, ପଲ୍ଲବ; ସ୍ମିତ-ମୃଦୁହାସ୍ୟ; କଳକଣ୍ଠ-ମୟୂର, କୋକିଳ ।

୩—(ଶ୍ଳେଷ) ସୁ ପ୍ରଭାତ(ଉତ୍ତମସକାଳ)ଶିବ କୁମାର (କାର୍ତ୍ତିକେୟ) ଙ୍କ ପରି ସର (ସମାନ) କ ? କାର୍ତ୍ତିକେୟ-ତାରକାନିସୂଦନ-ତାରକା ରାକ୍ଷସନାଶକ; ତାରାନାଃଶୋଷକ; ବାତସ୍ୱନ-ପବନ ଯୋଗୁଁ ପତ୍ରର ମର୍ମର ଶବ୍ଦ । ତାହା ଜୟଗୀତ ହେଲା । (ଏକନାଳାବଲମ୍ବୀ ଫଳଦ୍ୱୟ ଶ୍ଳେଷ) ହରି-ସୂର୍ଯ୍ୟ, ଇନ୍ଦ୍ର, ଯମାଦିଦେବତା; ସମ୍ଭାଷେ-ସମ୍ଭାଷଣ କରେ । ସଂ-ସମ୍ୟକ୍‌ଭାବରେ; ଭାସେ-ଦେଦୀପ୍ୟମାନ କରେ । କଉଶିକଦ୍ୱିଜପର-ବିଶ୍ୱାମିତ୍ର ଋଷି ଶ୍ରେଷ୍ଠ; ଅଥବା ବଶିଷ୍ଠ; ପେଚକ ପକ୍ଷୀର ଶବ୍ଦ କାକ;

—ଜ୍ୟୋତ୍ସ୍ନାଳିଣୀ—

Digitized by srujanika@gmail.com

୪

ଶଚୀପତି ବାରଣ                    ଶିରେ କି ଶୋଭମାନ
ସିନ୍ଦୂର ସମ ବାଳରବି
ସନ୍ତୋଷ ଲଭି ଚିତ୍ତ                    ସୁ ମାଣିକ୍ୟ ନିର୍ମିତ
ସୁସ୍ପୃଷ୍ଟ ଅର୍ଘ୍ୟଥାଳୀ ଏ ଭାବି ସେ
ସୁରଯୋଷା
ଶିଶିର ବିନ୍ଦୁ ଅର୍ଘ୍ୟମିଶା
ସତେ କି ଦେଇ ଫୁଲ୍ଲହସା
ସଜାଡ଼ି ତତପର                    ଶ୍ୟାମ ଦୂର୍ବା ନିକର
ଶ୍ରୀରାମେ ବନ୍ଦିବ ସହସା ସେ ।

୫

ଶଙ୍କର ପୁରେ ଘରେ                    ସିନ୍ଧୁ ସୁତ ନାଦରେ
ଶଯ୍ୟା ତେଜିଲେ ନାରୀଚୟ
ସୁରତ ବନ୍ଦ ଯେତେ                    ସମର୍ପି ଦେଲେ ସତେ
ସରସୀମାନରେ ହୋଇ ଥୟ ସେ
ସ୍ନେହଭରେ

---

ଭରଦ୍ୱାଜ-ଋଷି ଓ ଭଦଳଅ ପକ୍ଷୀ; ଶୈଳ-ମୁନିନିବାସ ପର୍ବତ; ମୁନି ବିଶେଷ; ଗନ୍ଧର୍ବକିନ୍ନର-ଦେବଯୋନି ବିଶେଷ; ମୃଗ, ଘୋଡ଼ା, କୋକିଳ ଇତ୍ୟାଦି ।

୪—ଶଚୀପତି ବାରଣ-ଐରାବତ; ସୁରଯୋଷା-ଦେବସ୍ତ୍ରୀ ।

୫—ସିନ୍ଧୁସୁତ-ଶଙ୍ଖ । ନାରୀଚୟ-ବିଟପୁରୁଷମାନେ । ରଥାଙ୍ଗ-ଚକ୍ରବାକ ।

—ଚକ୍ରବାଳିଣୀ—

Digitized by srujanika@gmail.com

## ସୀତା ପ୍ରେମ ତରଙ୍ଗିଣୀ

ପୁରସେ ମାତଲେ ପ୍ରେମରେ
ସଜନୀ ଦେଖ ସଙ୍ଗତରେ
ସୁଖେ ରଥାଙ୍ଗ କେଳି ସୁମନେ ଭଲି ଭଲି
ସ୍ୱଜନଙ୍କ ଶୁଶ୍ରୂଷା କରେ ସେ ।

୨

ଶଯ୍ୟା ତେଜି ବନ୍ଧନ ସୂର୍ଯ୍ୟକୁଳ କେତନ
ସୌମିତ୍ରୀ ସଙ୍ଗେ ସତ୍ୱରେ
ସ୍ନାନ ସନ୍ଧ୍ୟା ବନ୍ଦନା ସାରିଣ ତୋଷମନା
ସେକ୍ଷଣି ନମି ଋଷିବରେ ସେ
ଶ୍ୟାମଦେହ
ସୁପକ୍ୱ ଫଳାହାରେ ସ୍ନେହ
ସନ୍ନ୍ୟାସୀ ଗଣେ ଅହରହ
ଶାସ୍ତ୍ର ବିଧି ଯେ ମାନ ସ୍ମୃତି ସଂହିତା ମାନ
ବିନୋଦେ ବେଳା ମୁଦମୟୁ ସେ ।

୩

ସ୍ମିତେ ଗାଧିଜ ଋଷି ଶୁଣ ହେ ସୂର୍ଯ୍ୟବଂଶି,
ସୁମନେ ଗୃଲ୍ ଯିବା ଚାଲ
ସ୍ୱୟମ୍ବର ବିଧାନ ସଯତନେ ଭିଆଣ
ସୁତା ପାଇଁକି କଲେ ଭଲି ହେ
ଶ୍ୟାମତନୁ
ସୁଖେ ବରଲେ ଲକ୍ଷେ ଭୂପ
ସାମନ୍ତ ସେ ମିଥିଳା ନୃପ
ସୀତା ତାଙ୍କ କୁମାରୀ ଶଚୀ ମେନକା ନାରୀ
ସରି ନୋହିବେ ତାଙ୍କ ରୂପ ହେ ।

—ପଞ୍ଚଗୃଳିଣୀ—

Digitized by srujanika@gmail.com

୮

ସୁଷମା ସଙ୍ଗେ ଯାର        ଚଞ୍ଚଳା ମାନି ହାର
ଶରଣ ବିଷ୍ଣୁ-ପଦେ ଭାବେ
ଶଇଳ ରାଜ ସୁତା        ସଂସାର ମଣି ପିତା
ସତତ ଭଜେ ସଦାଶିବେ ହେ
ଶ୍ୟାମଚନ୍ଦ୍ର
ସ୍ମର ଯୋଷାଟି ରତିସିନା
ଶୋଭି ଅରମ୍ଭା ରମ୍ଭା ବାମା
ସୀତା ଚରଣ ତଳେ        ଶରଣ ଅବହେଳେ
ସାକ୍ଷାତ ଅତ୍ କି ଉପମା ହେ ।

୯

ପରସବତୀ ସୀତା        ସାକ୍ଷାତେ ଏକଚିତା
ସକଳ ତୀର୍ଥରୂପେ ମହ୍ନୀ
ସେ ସୁରତରଙ୍ଗିଣୀ        ସୁକେଶୀ କୃଷ୍ଣବେଣୀ
ସୁରସ ଉପୃଲାକ୍ଷୀ ସେହୁ ହେ
ଶ୍ୟାମଚନ୍ଦ୍ର

---

୮—(ଧ୍ୱନି) ଚଞ୍ଚଳା—ବିଜୁଳି, ଲକ୍ଷ୍ମୀ; ବିଷ୍ଣୁପଦ-ଆକାଶ, ଶ୍ରୀମନ୍ନାରାୟଣଙ୍କ ପାଦପଦ୍ମ; ଶଇଳ ରାଜସୁତା-ପାର୍ବତୀ ଜ୍ୱାର୍ କଠିନାଙ୍ଗୀ; ସଦାଶିବେ-ମହାଦେବଙ୍କୁ । ସଦା ମଙ୍ଗଳରେ ସ୍ମର-କନ୍ଦର୍ପ, ମନେ କର । ରତି-କାମସ୍ତ୍ରୀ; ଅଲଙ୍କାରିକାଏ । ଶୋଭି ଅରମ୍ଭା-ରୂପ-ଗର୍ବିତା; ଶୋଭର ପ୍ରାରମ୍ଭ ଅବସ୍ଥା ।

—ଛୟାଳଶି—

Digitized by srujanika@gmail.com

ସୀତା ପ୍ରେମ ତରଙ୍ଗିଣୀ

ସ୍ନାନ ଅନେଶ ଏ ତୀର୍ଥ ପର୍ଯ୍ୟ
ସ୍ତନ ରୂପରେ ଜବାଧର୍ଯ୍ୟ
ଶ୍ରୀଅଙ୍ଗେ କଲେ ବାସ          ଦେବ ଦେବ ମହେଶ
ସୁଲକ୍ଷଣୀ ସେ ପୂର୍ଣ୍ଣ ତୋର୍ ହେ ।

୧୦

ସ୍ମର ହୋଇବ ମୂକ          ଶ୍ରୀକରୁ ତା ବଶିଖ
ସବ୍ୟେ ପଡ଼ିବ ଛଲେ
ସରସ ଗୁଣବନ୍ତୀ          ସୁଭଦ୍ରା ହେବେ ପ୍ରୀତ
ଶାରଦା ମନ୍ଦୋଦରୀ ଭୁଲେ ସେ
ଶାର୍ଦ୍ଦୁଳକଟି
ସଙ୍ଗତେ ନୋହୁକର ସମ
ସିଂହ ଲୁଚିଲା ଘୋରବନ
ସ୍ଥାଣୁକରେ ଡମରୁ          ଶରଣ ପଶିବାକୁ
ସହିଲ ସିନା ତାକୁ ଯମ ସେ ।

---

୯—ସୁରତରଙ୍ଗିଣୀ-ଗଙ୍ଗା, ରତିପ୍ରବୀଣା; କୃଷ୍ଣବେଣୀ-କଳାବେଣୀ, ତୀର୍ଥ ବିଶେଷ; ସୁନୀଳ ଉତ୍ପଳାକ୍ଷୀ-ନୀଳ ଉତ୍ପଳନେତ୍ରା; ଶତୋତ୍ପଳା-ମହାନଦୀ (କଲୌ ଶତୋତ୍ପଳା ଗଙ୍ଗା) ।

୧୦— ବଶିଖ-ବାଣ; ସୁଭଦ୍ରା-ଦୁର୍ଗା ; ଶାରଦା-ସରସ୍ୱତୀ; ମନ୍ଦୋଦରୀ-ସ୍ତ୍ରୀ ଶ୍ରେଷ୍ଠ; ସ୍ଥାଣୁ-ମହାଦେବ ।

—ସତଗୂଲଣି—

Digitized by srujanika@gmail.com

୧୧

ସୁଷମେ ତା କାନ୍ତିଙ୍କ    ସମ ନୋହୁ କେତକୀ
ସଦା କଣ୍ଟକ ଦୁର୍ଗେ ବାସ
ସ୍ୱର୍ଣ୍ଣ ଅନଳେ ହ୍ରାସ    ସ୍ଥିର ନ ହୋଇ ତ୍ରାସ
ଶମ୍ପା ସୁନ୍ଦରୀ ଶୂନ୍ୟ ଦେଶ ହେ
ଶ୍ୟାମତନୁ
ସୁନେତ୍ରେ ତରଣ ମୀନାକ୍ଷି
ସତତ କରେ ଜଳ କେଳି
ଶତପତ୍ର ମୃଣାଳ    ସାରୁଛନ୍ତି ସିନା କାଳ
କୋମଳ ଭୁଜ ଲତା ତର ହେ ।

୧୨

ସନ୍ଧଜେ ସେ ସୁନ୍ଦରୀ    ସୁମନ-କାଳ ପରି
ସୁରେଖ ନଖ ତା କଅଳି
ସୁରଭି ପୂରେ ତନୁ    ସୁଭାଷ ଚୂତ ବନ୍ଧୁ
ସତେ କୋକିଳ ବାଣୀ ବଳ ହେ
ଶୀର୍ଣ୍ଣକଟି
ସୁରଙ୍ଗ ଅଧର ପ୍ରବାଳ
ସରଘା କି ରୋମାଳି ଦଳ
ସର୍ପାଂରେ ଯାନ୍ତ୍ରଚଳି    ସରୋଜ ନାଭି ଭୁଲି
ସତତ ମରନ୍ଦ-ପାଗଳ ସେ ।

---

୧୧—ଶମ୍ପା ସୁନ୍ଦରୀ—ବିଜୁଳି; ମୀନାକ୍ଷି—ମାଛ ସବୁ ।

୧୨—ସୁମନ କାଳ-ବସନ୍ତ ସମୟ;ସୁରଭି-ସୁଗନ୍ଧ; ଚମ୍ପା; ସରଘା-ମହୁମାଛି; ରୋମାଳି-ଲୋମଲତା; ମରନ୍ଦ—ମହୁ, ମକରନ୍ଦ ।

—ଅଠର୍ଗୁଳିଣି—

Digitized by srujanika@gmail.com

୧୩

ସରଜିଛୁ ମଦନ                    ସୁମନା କି ସଦନ
ଶ୍ରୀପଦେ ଦଳେ ବ୍ରହ୍ମାଜାତ
ଶାଢ଼ୀ ଧଡ଼ିରେ ଭିଡ଼ି                    ସରସରେ ସଜାଡ଼ି
ଶିବା-ବାହନ ରଖିଲୁ ତ ସେ
ଶୀର୍ଣ୍ଣକଟି
ଶମ୍ଭୁ ଯୋଡ଼ାଇ ହରଷରେ
ଶଶାଙ୍କ ଅଙ୍କୁ ତା' ଉପରେ
ସିଂହିକାସୁତ ସୁଖେ                    ଶିରେ ବସି ତା ପାଖେ
ସାମ୍ୟବାଦର ଶିକ୍ଷା ଧରେ ସେ ।

୧୪

ସ୍ୱର ରସ ସାଗର                    ସମ୍ଭରବେ ତାହାର
ସୁଖେ ମନ୍ଥିଲି କଲ୍ପ ଜାତ
ସନ୍ଦେହ ହୁଏ ମନେ                    ଶୋଭି ସମୁଦ୍ର ଏଣେ
ଶଶୀ କି ଅବା ଲେଖମାତ୍ର ସେ
ଶୀର୍ଣ୍ଣକଟି
ସତେ କି ଅପୂର୍ବ ମୋହିନୀ
ସୁମନେ ଗୁଳ ଚୁଡ଼ାମଣି
ଶିବଧନୁ ଦେଖିବ                    ସୂର୍ଯ୍ୟ କୁଳ ବଲ୍ଲଭ
ଶୁଣି ହସିଲେ ସେହିକ୍ଷଣି ସେ ।

---

୧୩—ବ୍ରହ୍ମାଜାତ-ପଦ୍ମ; ଶିବାବାହନ-ସିଂହ; ଶଶାଙ୍କ-ଚନ୍ଦ୍ର (ମୁଖ) ଶମ୍ଭୁ-ସ୍ତନଶମ୍ଭୁ; ସିଂହିକାସୁତ-ରାହୁ (କେଶ) ସାମ୍ୟବାଦ-ସମଦର୍ଶୀତ୍ୱବ; ବୈରତା ଶୂନ୍ୟ ଏହା ଅର୍ଥ ।

—ଅଣଷାଠ—

Digitized by srujanika@gmail.com

୧୫

ଶୁଭ ବେଳରେ ଋଷି ସଙ୍ଗତେ ରଘୁବଂଶୀ
ସୌମିତ୍ରୀ ହୋଇଲେ ବାହାର
ପାରନ୍ତି ପୁଟେଶ ପଥ ସୁମିଷ୍ଟ ଆଳାପେ ତ
ଶେଷେ ଗୌତମାଶ୍ରମେ ଗାଠ ସେ
ଶ୍ୟାମତନୁ
ଶୂନ୍ୟ ଦେଖିଲେ ସେହୁ ସ୍ଥଳ
ସାଶ୍ଚର୍ଯ୍ୟେ ତହୁଁ ରଘୁବାଳ
ସଧୀରେ ବୋଲେ ଗିରଂ ସନ୍ନ୍ୟାସି ହେ କାହାର
ତପୋବନ ଏ ପରମଳ ସେ ।

୧୬

ସରୋଜାସନ ସୁତା ସୁନ୍ଦରୀ ଗୁଣଯୁତା
ସୌନ୍ଦର୍ଯ୍ୟେ ଯାର ରତ ରତ
ସ୍ନେହେ ଗୌତମ କରେ ସମର୍ପିଥିଲେ ଧୀରେ
ଶଚୀଶ ଯେ ସୁମତ ମତ ହେ
ସାକ୍ଷାତରେ
ସେହୁ ସୁନ୍ଦରୀ ଲଭ ଅଶେ
ସକଳ ଜଣାଉଁ ଲୋକେଶେ
ସମ୍ମତ ନୋହୁ; ତାର ସତୀତ୍ୱ ଅପହାର
ଶିଳା ହୋଇଲେ ବନ ଦେଶେ ହେ ।

---

୧୬--ସରୋଜାସନ ସୁତା-ବ୍ରହ୍ମାଙ୍କ ଝିଅ ଅହଲ୍ୟା, ଲୋକେଶ-ବ୍ରହ୍ମା ।

—ପରୁଣ—

Digitized by srujanika@gmail.com

୧୭

ଶ୍ରୀପଦ-ରଜ-ରଜ— କରେ ହେ ରଘୁରାଜ
ଶାପ-ତମସ ଧ୍ୱଂସ କର
ଶୁଣା ଅଛୁ ହେ ଗୁଣା— ସ୍ମନ ଭୂମ୍ବ ବାଳଣା
ସଂସାରେ ପତତ ତଙ୍କର ହେ

ଶ୍ୟାମଚନ୍ଦ୍ର

ସେକଣୀ ଋଷି ଭ୍ରଟଷ ତୋଷି
ଶ୍ରୀପଦ ଶିଳାରେ ନବେଶି
ଶାପାନ୍ତେ ଋଷିବାଳୀ ସରସେ ନଓିଛଳ—
ଅଚଳ ସ୍ତୁତରେ ସନ୍ତୋଷି ହେ ।

୧୮

ସରସ୍ୱତୀ ଯା ଗୀତ ସୁତନ୍ତ୍ରୀରେ ନାଦତ
ସ୍ୱର୍ଲୋକ ବାସୀ କରେ ମୋହ
ସାଧୁ ନୟନେ ନୀର ସ୍ମରଣେ ସେ ମଧୁର
ସୁନାମ; ନାଶେ ପାପ ବ୍ୟୂହ ସେ

ସତତରେ

ସୁଖେ ରହୁ ସେ ମୋ ଚିତ୍ତରେ
ସୁରମ୍ୟ ମୂରତ ସତରେ
ସୁଗୁଣାତ୍ମନ ଗୁଣ ଶୁଣି ଶୁଣି ଶ୍ରବଣ
ସାତ୍ତ୍ୱିକ ଲଭୁ ମୋ ମତରେ ସେ ।



Digitized by srujanika@gmail.com

୧୯

ସୁଲକ୍ଷଣି ଗୋ ରହ        ସ୍ୱାମୀ ପାଶକୁ ଯାଅ
ସେତ ସାକ୍ଷାତେ ବେଦମନ୍ତ୍ର
ସରଳ ତୁମ୍ଭ ଶାପ        ସୁକୃତଟି ଅମାପ
ସୁଖ ସମ୍ଭୋଗେ ଧନ୍ୟ ନିଅ ଗୋ
ସ୍ୱର୍ଣ୍ଣଅଙ୍ଗି
ସାଯୁଜ୍ୟ ଲଭ କର ଅନ୍ତେ
ସ୍ତୁତରେ କହୁଅଛୁ ପ୍ରୀତେ
ସଜାଡ଼ ଅର୍ଘ୍ୟଥାଳୀ        ଶ୍ରୀରାମେ ରଖିବାଳୀ
ବନ୍ଦଲେ ଜାଙ୍ଗଳିକା ମତେ ସେ ।

୨୦

ସ୍ତନ ତା ସାପପେଡ଼ୀ        ସୁନ୍ଦର ପର୍ପାଟି
ସେ ଗ୍ରହ-ଗୀତ ପଦ୍ମତୋଳା
ସୁତନ୍ତୁ ତନ୍ତୁ-ଗନ୍ଧ        ସତେ କରେ ଆମୋଦ
ଶିରୀ ବନାଣେ ଗଦ ତୁଳା ସେ
ସୁକୁନ୍ତଳା
ଶୀହସ୍ତେ ଧରବା ତଣ୍ଡୁଳ
ସିଦ୍ଧ କା ମନ୍ଦଧୂଳି ତୁଲ
ସହଜେ କଲ ବଣ        ପୁନ୍ନାଗ ଚଧୁଣ
ସୌଭାଗ୍ୟ କେ କରବ ମୂଲ୍ୟ ସେ ।

---

୧୯—ସାଯୁଜ୍ୟ-ମୁକ୍ତି ବିଶେଷ; ଜାଙ୍ଗଳିକା-ସାପୁଆଣୀ, ବନବାସିନୀ ।
୨୦—ଶିରୀ-ଶ୍ରୀ-ବିଷ; ପୁନ୍ନାଗ-ପୁରୁଷନାଗ ଓ ପୁରୁଷଶ୍ରେଷ୍ଠ ।

—ବାଅନ—

Digitized by srujanika@gmail.com

୨୧

ଶୀତକର ବଦନ ସଧୀରରେ ଗମନ
ସୌମିତ୍ରୀ ବାହୁମିତେ ଧରି
ସୁଦୂରେ ସୁରନଦୀ ସଦ୍ମ ବଳୟ ଭେଦ
ସଙ୍ଗୀତ କଳ କଳ କରି ସେ
ବୈଦେହୀ
ଶ୍ୟାମ ସୁନ୍ଦର ଦେଖି ନେତ୍ରେ
ସୁସ୍ନେହ ପଶ୍ରନ୍ତୁ ବାହୁମିତେ
ସେକ୍ଷଣି ଋଷି ଭାଷେ ସଗର ସୁତ ଅଶେ
ଶୂନ୍ୟ ଅଣାଇଥିଲେ ଏଥେ ସେ ।

୨୨

ସୂର୍ଯ୍ୟକୁଳ ଭୂପ ତ ସେ ବୀର ଭଗୀରଥ
ସଂସାରେ ତେଣୁ ଏ ତଟିନୀ
ସ୍ୱୟଂ ବହନ୍ତ ନାମ ଶ୍ରୀଭାଗୀରଥୀ ଗ୍ରାମ
ଶୁଣ ଏ ତ୍ରିଲୋକ ପାବନୀ ହେ
ଶ୍ୟାମତନୁ
ପିଞ୍ଜ ପିଞ୍ଜ ଶିରେ ଏ ନୀର
ଶୁଣି ତା କଲେ ରଘୁବୀର
ସୌମିତ୍ରୀ ଧୀରେ ଭାଷେ ସୁମନେ ରାମ ପାଶେ
ଶ୍ଳେଷ ବାଣୀ କି ମନୋହର ସେ ।

—ତେପନ—

Digitized by srujanika@gmail.com

୨୩

ସୁମନା ଏ, ସୁମନା— ଶିର ବନ୍ଦନା, ପିନା
ସରସ ରସେ ପରିପୂର୍ଣ୍ଣ
ସ୍ତନ ଚନ୍ଦ ସୁନ୍ଦର ଶୈବାଳ ସ୍ତନାଗ୍ରର
ଶୋଭାକୁ ଦେଖି ରଘୁନାଥ ହେ

ଶ୍ୟାମଚନ୍ଦ୍ର

ସୁହାସ-କୁମୁଦ ପ୍ରମୋଦେ
ସୁନେତ୍ର ଫୁଲ୍ଲ-ଅରବିନ୍ଦେ
ଶିଳୀମୁଖ-ଅଞ୍ଜନ କରେ ମନରଞ୍ଜନ
ସଙ୍ଗୀତ ଗାଏ ଗୀତ-ଛନ୍ଦେ ହେ ।

୨୪

ସଂସାର ପାପ-ସେତୁ ବିଭଞ୍ଜନେ ଯେ ହେତୁ
ସ୍ୱର୍ଲୋକ କରି ପାରେ ଦାନ
ଶିରଶିରେ ଯାହାର ନିରନ୍ତର ବିହାର
ସେତେ କି ମଣିଲ ସାମାନ୍ୟରେ

ସତ୍ତମିନି,

ସ୍ୱର୍ଗାପବର୍ଗବିଧାୟିନୀ
ସାକ୍ଷାତ ମୁକତି ଦାୟିନୀ
ସରିତ-କୁଳେଶ୍ୱରୀ ଚରିତକୁ ଅନ୍ତର
ନଜାଣୁ ରଘୁନାଥ ଭଣି ସେ ।

—ଚିତ୍ରବନ—

Digitized by srujanika@gmail.com

୨୫

ଶେଷାଂଶ ଅତ ତୋଷେ          ସରତ ପାର ଅଶେ
ସଧୀରେ ଧୀବରେ ବଦନ୍ତ
ଶ୍ରବଣ ଥାଉ ତୋର          ସତେ ବଧିର ବର
ଶୁଣିବୁ ନାହିଁ ଇ ଭାରତୀରେ
ଶିଥିଳତା
ଶୁଭକାର୍ଯ୍ୟରେ ଏ କ କଥା
ସୁବୁଦ୍ଧି ପର ପୋତୁ ମଥା
ସାମନ୍ତ ପର ଭବ          ଦାସ ତୁ ଏ ସ୍ୱଭାବ
ଶଙ୍କା ଅଣଇ ହୃଦେ ବୃଥା ରେ ।

୨୬

ଶୁଧୀବର ଧୀବର          ହେବ କପାଁ ବଧିର
ଶୁଣିଛୁ ଶକତ-ବାରବ
ଶିକ୍ଷା କ ଇନ୍ଦ୍ରଜାଲ୍          ସତେ ହେ କରଥିଲ୍
ମୁଷିଲା ସୁଣୀଲା ଉଭବ ହେ
ସୁନାସୀର
ଶ୍ରୀପଦରଜ ପରଶରେ
ସେ ପର ତରଣୀ ହୋଇଲେ
ସିନା ଉ କାର ଭେଦ          ସରବ ମୋ ସଂପଦ
ଶରଣ ଚରଣ ତଳରେ ହେ ।

---

୨୬—ଧୀବର-କେଉଟ, ପଣ୍ଡିତ । ତରଣୀ-ନୌକା ।



Digitized by srujanika@gmail.com

୨୭

ସ୍ମିତେ କହିଲେ ବାଣୀ       ହେ ସୂର୍ଯ୍ୟକୁଳ ମଣି
ଶ୍ରୀପଦ ଧୋଇଦିଅ କରେ
ସନ୍ଦେହ ହେବ ନାଶ       ସୂଖେ ପୂରିବ ଆଶ
ସେକ୍ଷଣି ତରି ବାହେ ଖରେ ସେ

ଶ୍ୟାମତନୁ

ସଧୀରେ କରନ୍ତେ ଗମନ
ସୁସ୍ନେହ ଧୀବର-ତୋଷମନ
ପ୍ରିୟ୍ୟା ବାଞ୍ଛିତ ପଦ       ସ୍ୱୟମ୍ଭୁର ସଂପଦ
ଶୁଦ୍ଧେ ଧୋଇଲା ସେ ଜୀବନ ସେ ।

୨୮

ଶତଗ୍ରନ୍ଥିଳ ବାସ       ହୋଇଣି ହସ ହସ
ଶିରୁ ସେ ଅଣି ପୋଛିଦେଲା
ସାମନ୍ତ ତୁମ୍ଭେ ମୋର       ସତ୍ୱରେ ବିଜେ କର
ଶ୍ରମ ମୋ ସଫଳିତ ହେଲା ହେ

ଶ୍ୟାମତନୁ

ସୁନ୍ଦର ପ୍ରବାଳ ଅସନେ
ସୌମିତ୍ରି ସଙ୍ଗେ ତୋଷମନେ
ସନ୍ନ୍ୟାସୀ ସହିତରେ       ସରିତ ତରିଗଲେ
ସୁମନେ ଦେଖନ୍ତି ସୁମନେ ସେ ।

---

୨୭—ଜୀବନ-ଜଳ ।

—ଛପନ—

Digitized by srujanika@gmail.com

୨୯

ସୁରକାନ୍ତ ସୁନ୍ଦର ସୌମ୍ୟ-ସ୍ୱର୍ଗ-ପୁରନ୍ଦର
ଶ୍ରୀପଦ କରନ୍ତେ ଗମନ
ସୁରଭିରେ ତାହାର ଶିଳୀମୁଖ ନିକର
ଶୂନ୍ୟରୁ ଆକର୍ଷିତ ମନ ସେ
ସୁଲକ୍ଷଣ
ସାକ୍ଷାତେ ଦୃଶେ ଚନ୍ଦ୍ରମାନ
ଶକ୍ରଆୟୁଧାକ୍ରୁଣ ଜାଣ
ସୁର ନାୟିକା ଗଣ ଶୂନ୍ୟରେ ବେହରଣ
ଶୁଭଇ ହୁଳହୁଳି ସ୍ୱନ ସେ ।

୩୦

ସ୍ୱକୁଳ ବିଭୂଷଣ ସୁଷ୍ଟେ କରୁ ଗମନ
ସୁମନେ ଶ୍ରବ ଦାନ-ବନ୍ଧୁ
ଶମ୍ବରଧର କୋଳେ ସରସେ ବସି ହେଲେ
ଲୁଗୃଇ ଦେଲେ ମୁଖ ଇନ୍ଦୁ ସେ
ସୁଗନ୍ଧରେ
ସମୀର ବହୁ ବହୁ ଗଲେ
ସୁସ୍ୱରେ କିନ୍ନରୀ ଗାଇଲେ
ଶବଦ ମନୋହର ସ୍ଫୁରିଲା ଶୂନ୍ୟପୁର
ସକଳେ ଜୟ ଜୟ କଲେ ସେ ।

---

୨୯—ଶିଳୀମୁଖ–ଭ୍ରମର; ଶକ୍ରାୟୁଧ–ବଜ୍ର ।
୩୦—ଶମ୍ବରଧର–ମେଘ ।

—ସଭାବନ—

Digitized by srujanika@gmail.com

୩୧

ଶ୍ୟାମ ସୁନ୍ଦର ତନୁ ଶତ କୋଟି ମଦନୁ—
ସୁନ୍ଦରଂ ହୋଇ କଲେ ବକେ
ଶୁଭ୍ରାଙ୍କ ଚହଲ ସତ୍ୱରରେ ବହଲ
ସରବେ ଦରଶନ ବ୍ୟାକେ ସେ
ସେହ୍ରାକ୍ଷଣି
ଶିଶୁ ସହିତେ ଅସି ଦାଣ୍ଡେ
ସଚକିତରେ ଅତ ଗୃଣ୍ଡେ
ସ୍ମରିଲେ ମନେ ମନେ ସଙ୍ଗେ ଅତ ପ୍ରସନ୍ନେ
ସଖା ହୁଅନ୍ତୁ ହେଲେ ଦଣ୍ଡେ ସେ ।

୩୨

ମୁକ୍ତକେଶା ଗଜଗତ ସତ୍ୱରେ ସେ ଜଗତୀ—
ଶିଖରେ ଯାଇ ହେଲେ ଭଗ୍ନ
ସ୍ମର ବନ୍ଧନ୍ତ ଘନେ ସେ ପାଞ୍ଚି ହେଲେ ମନେ
ସାକ୍ଷାତେ ହୋଇବାକୁ ବଗ୍ନ ସେ
ସୁଚତୁରୀ
ସ୍ୱରୂପେ ହୋଇଲେ ଅତୁର
ଶୁନେ୍ୟ ଭଡ଼ନ୍ତ ପ୍ରେମଭର
ଶ୍ୟାମ ସୁନ୍ଦର ରୂପ ପ୍ରେମ–ସିନ୍ଧୁ ସ୍ୱରୂପ
ସୁମନା ଧୈର୍ଯ୍ୟକୁ କତୁରୀ ସେ ।



Digitized by srujanika@gmail.com

୩୩

ସଙ୍ଗୀତ ପ୍ରବୀଣା ବେ       ସୁବପଥି-ମାଦକେ
ସ୍ୱାମୀ ସହିତ ଥିଲ ମତ୍ତ
ସଜନୀ ବାଣୀ ଶୁଣି       ସବେଗ ମୃଗୀ ଧନୀ
ସେକ୍ଷଣି ଅସିଲ ଧାଇଁ ତ ସେ

ସୁକୁନ୍ତଳା

ସୁ ଦୃଷ୍ଟି ଯେଣୁ କଲ ପାତ
ସୁଖେ ଲଭିଲ କାମ ଘାତ
ସରଲ ସହଚର,       ଶରଣ ରକ୍ଷା କାରୀ
ସ୍ମର ହୋଇଲ ଶର ବଢ ସେ ।

୩୪

ସାମନ୍ତ ଗଜରବ       ସୁମନା ଏ ସରବ
ସେ ଦେଲେ ଅଜ ନମାନ୍ତଲେ
ଶ୍ରୀରାମ-ଶାଟରେ ଧାମା       ସତେ କ ପୃଥୁରୋମା
ସଦୃଶ ହୋଇଣ ବୁଡ଼ିଲେ ସେ

ଶାର୍ଦ୍ଦୂଳକଟି

ସ୍ୱୟଂ ଓଷ୍ଠାର ହୋଇ ପଡ଼ି
ସିତ୍କାର ଭଜିଗଲେ ଗଡ଼ି
ଶିବ କରବ ଶିବ       ସତେ ଏ ସ୍ୱାମୀ ହେବ
ଶରୀରେ ପିବ ତନ୍ତୁ ଜଡ଼ି ସେ ।

---

୩୪—ପୃଥୁରୋମା-ମତ୍ସ୍ୟ ।



Digitized by srujanika@gmail.com

୩୫

ସହୃଦ କେଉଁ ବାମା          ସରସେ ପ୍ରୀତଧାମା
ସ୍ନେହେ ଛଳନା ଏହୁମତ
ସଙ୍ଗୀତ ଶୁଣ ବାଣୀ          ସୁନ୍ଦରୀ ଯେତେ ପୁଣି
ସୁନା ସମାନ ପରତୀତରେ

ସହଚର,

ସୁରସିକ ଏ ଯୁବାମଣି
ସଜନ, ଗୁଣିଙ୍କ ବନ୍ଦାଣୀ
ସୁପଣ୍ଡିତ କେ ଜଣେ          ସ୍ମିତେ ସେଷଣି ଭଣେ
ଶାସ୍ତ୍ର ଖଣ୍ଡିତା କଲ୍ପ ପୁଣି ରେ ।

୩୬

ସରଳା ଯେତେ ଭାବ          ଶମ୍ବର ପର ଭାବ
ସ୍ୱଭାବେ ବନସ୍ଥ-ଠାଣା
ସତେ କଷଟି-କୋଳେ          ସମ ବିଷମ ହେଲେ
ସାକ୍ଷାତେ ଜଣାଯିବ ସିନାରେ

ସହଚର

ସୁପ୍ରୀତ ରସାଣିତ ହେବ
ଶୁଦ୍ଧ ହାଟକ ଝଟକିବ
ଶିଖା ବିରହାନଳ          ଶମିବରେ ପ୍ରବଳ
ସୁକମନୀୟ ଅନୁଭବରେ ।

---

୩୬—ହାଟକ-ସୁନା ।



Digitized by srujanika@gmail.com

୩୭

ସଦ୍ଗୁଣେ ଜନ୍ମାରେ ସଦାଶିବ ନଗରେ
ସରସେ ଲଗାଇ ଜାଗରେ
ଶୀତେ ବା ପ୍ରୟାଗରେ ସ୍ନାନଯାଏ ବେଗରେ
ସୁଗୁଣ ବଡ଼ୀ ସଗରେ ଗୋ
ସହଚର
ସ୍ୱାମୀ ବିଭୂବେ ଏ ନାଗରେ
ସେ କୋଳେ ବସାଇ ବେଗରେ
ସାର୍ଥ କରନ୍ତା ଜୀବ ଶରୀରେ କରୁ ଯୋଗ
ଶ୍ରୀମୁଖେ ଚୁମ୍ବନ ସଂଗରେ ଗୋ ।

୩୮

ସୁମନା କେ ଜନନୀ ଶ୍ରୀମୁଖ ଦେଖେ ପୁଣି
ସ୍ତନ ପିଆଇ ହରଷରେ
ଶତମଖ ବଲ୍ଲଭ ସରସେ ରସବତୀ
ଶ୍ରୀପଦେ ତେଲ ଦେଇବାରେ ଗୋ
ସୁତରୂପେ
ଶତ କଳସେ ତପ କର
ସତେ ଲଭିଲା ଗୃପଧାରୀ
ସଂଙ୍ଗ, କା' ଭାଗ୍ୟଥିବ ସେହିପିନା ବରବ
ଶ୍ୟାମତନ୍ତୁକୁ ପଡ଼ ପର ଗୋ ।

୩୮—ଶତମଖ–ଇନ୍ଦ୍ର ।



Digitized by srujanika@gmail.com

୩୯

ସାକ୍ଷାତ ଏତ ହର ସାନ କ ନିପୁତ୍ରର
ସ୍ୱୟମ୍ବର୍ ନ କ ସେ ବଣ୍ଟାମିକ
ସ୍ୱୟମ୍ବର ସଭାରେ ସଭେ ମିଳ ଲୋଭରେ
ଶିବଧନୁକୁ ଧର ହସ୍ତରେ

ସହଚର,

ସଭାରେ ବେକା ଖଣ୍ଡ କର
ସୀତା ଭୋଗିବେ ସେ ତ ଶାର
ସଜନ, ଅମ୍ଭ ସୀତା ସଭେ ବାସନ୍ତୀ ଲତା
ସହକାର ଏ ଗଲେ ମିଳ ଗୋ ।

୪୦

ସଖିଙ୍କ କେ ବୋଲଇ ସହ, ଜାନକୀ ଏହ
ଶ୍ୟାମଘନରେ କ ଚପଳା
ସଲୋଳେ ଲୀଳା କର ଶବରୀ ଦବା ହର
ସୁଖେ ରଚବେ ପ୍ରେମ କଳା ଗୋ

ସହଚର,

ସୁ-ଭାଗ୍ୟ ସତେ ଅମ୍ଭ ଥିବ
ସରସ ଉତ୍ସବ ହୋଇବ
ଶ୍ରୀରାମ ବାମ ପାଶେ ସତୀ ବସି ସୁହାସେ
ସକଳ ନେକ ସନ୍ତୋଷିବ ରେ ।

—ବାଷଠି—

Digitized by srujanika@gmail.com

୪୧

ସୁମନଶର ତହିଁ ସୁବେଦୀ ବପ୍ର ହୋଇ
ସୁ ସ୍ୱରେ କାମ-ମନ୍ତ୍ର ଗାଇ
ସୁଲକ୍ଷଣା ଶ୍ରୀରାମ ଶ୍ରୀକର ବେଳା ଜାଣି
ସରସେ ପ୍ରେମ କୁଣ ନେଲରେ
ସହଚରି
ଶିଥିଳ ନକର ବନ୍ଧନେ
ସତେ ବାନ୍ଧବ ସୁ ଯତନେ
ସାତ୍ତ୍ୱିକ ଭାବ ଯେତେ ସୁମନାରେ ପରତେ
ଶ୍ରୀମୁଖ-ବାଦ୍ୟ ମୋଦ ମନରେ ।

୪୨

ଶିଖରୀ ସ୍ତନା ଶୁଣି ସତେ ହୋଇବ ପୁଣି
ସୁହୃଦସ୍ଥାରେ ହୃଦ-ବେଦ
ସ୍ତନ କଲଶ ଯୁଗ ରୋମାଳଟି ସଂଯୋଗ
ଶ୍ୟାମଳ ଦୂର୍ବାଙ୍କୁର ଛବିରେ
ସହଚରି

୪୨—ଷୋଳ ସୁମନେ ଜାତବାଳା—ଷୋଳ ପ୍ରକାର ଫୁଲର ଶୋଭା ନେଇ ଯାହାଙ୍କର ଅଙ୍ଗଗଠିତ ହୋଇଛି—ଯଥା—ମୁଖ-ପଦ୍ମ, ନେତ୍ର-ନୀଳୋତ୍ପଳ; ଅଧର-ବନ୍ଧୁଳି । କର୍ଣ୍ଣ-ପାଟଳ, ନଖ-କଅଁଳ; ନାସା-ତିଳ; କାନ୍ତି-କେତକୀ; ଅଙ୍ଗ-ଶିରୀଷ; ଦନ୍ତ-କୁନ୍ଦ । ହାସ-କାଶ; ଅଙ୍ଗୁଳି-ଚମ୍ପାକଳି; ପାଦ-ସ୍ଥଳପଦ୍ମ ।



Digitized by srujanika@gmail.com

ଷୋଳ-ସୁମନେ ଜାତ ବାଳା,
ସତେ ପୂଜିବ ହୋଇ ଭୋଳା
ସରଜ ଲଜା ହେମ          ବରଜ ବ୍ୟାଜ ଶ୍ରମ
ସୁରତ ଅରଜ ବହ୍ୱଳାରେ ।

୪୩

ସୀତା ମନ ଚକୋର          ଶ୍ରୀରାମ-ଶଶଧର—
ସୁଧାପାନେ କି ହେବ ତୋଷ
ସୁରସ ଗୃହଭୂଷ          ସେହି ପ୍ରେମ-ପୀୟୂଷ—
ସାଗରେ ବୁଡ଼ିବ ସରସରେ
ସହଚର

ସୁନ୍ଦର ଦୋଳ-ସିଂହାସନେ
ସୁନ୍ଦରୀ ସାମ୍ରାଜ୍ଞୀ ସମାନେ
ସମ୍ଭାର ଅଭିଷେକୀ          ହେବ ପ୍ରାଣ ପୁଲକି
ସହଜେ ହେଉଛୁ ଭୁବନେରେ ।

୪୪

ଶୁଭିଲା ବେଣୁ ବେଳ          ଶିଶୁ କଲେ ଚହଳ
ଶ୍ରୀରାମଚନ୍ଦ୍ର ଅସୁଛନ୍ତ
ସର୍ବ ଭକତ-ହୃଦ—          କୈରବ ହେଲା ମୁଦ
ଶର୍ଣୀକାନ୍ତ କି ସର୍ବଧୃତ ହେ
ସାଧୁଜନେ

୪୪—କୈରବ-କଇଁ; ମୁଦ-ଆନନ୍ଦତ; ଶମ୍ବର-କାମ ।



Digitized by srujanika@gmail.com

ସୁହୃଦେ ମିତ୍ର ଭାବ ଧରି
ଶିଶୁ ନୟନେ ସଖା ପରି
ସ୍ୱାତ୍ତ୍ୱିକବାଦୀ ଜନେ          ଶ୍ରୀଧର ପରି ପ୍ରତେ
ସୁମନା ପାଇଁ ଶମ୍ବରାରି ହେ ।

୪୫

ସଭାତଳେ ପ୍ରବେଶ          ସମ୍ବାଦ ଗଲା ପାଶ
ସେ ରାଜା ଜନକ ସମ୍ମୁଖୁ
ଶୁଣି ଏହା ନୃମଣି          ସନ୍ତୋଷେ ସେହୁ କ୍ଷଣି
ସବଧୂ ପୂଜିଲେ ତାହାଙ୍କୁ ସେ
ଶ୍ରଦ୍ଧାଭରେ

ସ୍ୱୟମ୍ବରରେ ସ୍ଥାନ ଦେଲେ
ସୌମିତ୍ରୀ ସଙ୍ଗେ ରାମ ଗଲେ
ଶିରୋମଣି ନୃମଣି          ସର୍ବ ବୃତ୍ତାନ୍ତ ଜାଣି
ସହଜେ କୃତକୃତ୍ୟ ହେଲେ ସେ ।

୪୬

ସୁବର୍ଣ୍ଣ ଅଙ୍ଗୀ ସୀତା          ଶ୍ରୀରାମ ରୂପେ ପ୍ରୀତା
ସଜନୀ ମନମାୟା ପାଶେ
ଶ୍ୱାସ ବରଜ ଦୁଃଖେ          ଶରଣ ମୂଳେ ମୁଖେ
ଶୀକର ନିହ୍ନ ମନେ ଭାଷେ ରେ
ସହଚରୀ

—ପଞ୍ଚଷଟି—

Digitized by srujanika@gmail.com

ସୁନୀଳ ମରକତ ତନୁ
ସହ୍ୟରେ ସତେ କି ଅତନୁ
ସୌଭାଗ୍ୟ ମୋର ଥିବ          ସ୍ୱାମୀ ରୂପେ ମିଳିବ
ସତେ ଭାଙ୍ଗିବ ଶିବଧନୁ ରେ ।

୪୭

ଶ୍ରୀରାମ ହେ ନମସ୍ତେ          ସଦ୍ଭ କରୁ ନାରତେ
ଶ୍ରୀଚରଣରେ ମୋର ମନ
ସୁଖଦ ଜନାକର          ସହସ୍ର କର ଖର
ଜ୍ୱଳିତ ତେଜ ହର ଛନ ହେ ।
ସତତରେ
ଶିବ ହରଷ ଦାନ କର
ସୁମନ ବନ୍ଦିତ ପଦ୍ମର
ମୂରେ ଗ୍ରାନ୍ଥିକ ନାତ୍ୟ          ସେ ମୋକ୍ଷ ମାର୍ଗତତ୍ତ୍ୱ
ସୁନାମ ଭଜନେ ତତ୍ପର ସେ ।

---



Digitized by srujanika@gmail.com

# ସର୍ଗ ପାଞ୍ଚ

ରାଗ—ନଳିନୀ ଗୌଡ଼ା

## —ଶିବଧନୁର୍ଭଙ୍ଗ ଓ ଅଯୋଧ୍ୟାକୁ ସମ୍ବାଦ ପ୍ରେରଣ—

ମାଧବ ରାଘବ ରସ ଶୁଣ ମନ ଦେଇ
ସୁଧା-ସରିତ ଏ ସତେ ଯାଉଅଛି ବହି । ୧ ।
ଶ୍ୟାମଳ ଶ୍ରୀଅଙ୍ଗ ଶୋଭା ଶଶୀ ସମ ହେଲା
ସକଳ ମୁଖରେ ହାସ-କୁମୁଦ ଫୁଟିଲା । ୨ ।
ସୀତା-ମନ-ଚକୋରୀ ତା ସୁଖେ କଲା ପାନ
ସୁଧାଇର୍ଷି-ଚନ୍ଦ୍ରକାନ୍ତ ତରଳେ ବଦନ । ୩ ।
ଶଙ୍କା-ବିରହ ସହ, ତୁଟିବ ତିମିର
ସଖୀ ଭାବେ କଳଙ୍କ କଳନା ହେବ ସାର । ୪ ।
ସରୁ ଦନଠାରୁ ଶୁଭ୍ରମପ୍ନ ସ୍ୱୟମ୍ବର
ସ୍ଫୁରୁଅଛି ବାମନୟନ ମୋର ବାରମ୍ବାର । ୫ ।
ସଜନୀ-ଭାରତୀ ଶୁଣି ସେ ଗଜଗମନୀ
ସାଶ୍ରୁ ନେତ୍ରେ ଧୀରେ ଧୀରେ ବୋଲୁଛନ୍ତି ବାଣୀ । ୬ ।
ସଂସାର ତାରଙ୍କ ଶିକ୍ଷା ଶିଖିଲେ ହେଁ ପିତା
ସହିରେ ସେ ନଜାଣିଲେ ମୋର ଘୋର ଚିନ୍ତା । ୭ ।
ସମର୍ପଣ ପଣ ଯାହା କଲେ ମୋହ ପାଇଁ
ସୂର୍ଯ୍ୟ ପଶ୍ଚିମେ ଉଦୟ ହେଲେ ହେବ ଯାଇଁ । ୮ ।
ଶତ କୋଟି ସିଂହବଳ ପିନାକରୁ ସିନା
ସୁକୁମାର କେ ଭାଙ୍ଗିବ ଏ ଭବେ ନବୀନା । ୯ ।

—ସତପଟି—

Digitized by srujanika@gmail.com

ଷାଣ୍ମାତୁର ଲବଣାଦ ଦୁର୍ଜୟ ଜଗତେ
ସହସ୍ରାର୍ଜ୍ଜୁନ ରାବଣ ବୀରଅଧ ଯେତେ । ୧୦ ।
ଶକ୍ତିହୀନ ହେଲେ ଯଣି ମାନ ତାକୁ ଚାହିଁ
ସଂସାରେ କେ ଆଉ ଅଛୁ ବଳବାନ ହୋଇ । ୧୧ ।
ସଜନୀ ବୋଇଲା ସୀତେ ହେଲୁ କି ବାତୁଳ
ଶିବ ମୋହନୀ କି କେବେ ବସିବେ କା କୋଳ ? । ୧୨ ।
ଶତହ୍ରଦା ମେଘ ବିନା ଥିବ କା ଅଙ୍କେ
ଶଶୀ କୋଳେ ରୋହିଣୀ ତ ବସିବେ ନିଃଶଙ୍କେ । ୧୩ ।
ଶ୍ରିୟା ତୁଲ୍ ରାଜପୁର-ଶ୍ରୀବୃଦ୍ଧିରୁ ଜାତ
ଶ୍ରୀଧର ନୋହିଲେ ତୁମେ ଧରିବ କା' ହାତ । ୧୪ ।
ଶରାସନ ଭଗ୍ନ ଆଜି ହୋଇବ ନିଶ୍ଚୟ
ସତ ଗୋ ହୋଇବେ ପତି ରଘୁକୁଳରାୟ । ୧୫ ।
ସ୍ମର ପାଇ ଲାଜ ହୋଇ ଭାଜି ପଳାଇବ
ସ୍ୱୀକୃତ ମୋର ସୁକୃତ ହେଲା ତୋ ସମ୍ଭବ । ୧୬ ।
ସଭାତଳେ ଏହିକାଳେ ନୃପତି ଜନକ
ଶୀଘ୍ରେ ପୁଚ୍ଛିଲେ ସେ ବିଶ୍ୱାମିତ୍ରଙ୍କୁ ଉତ୍ସୁକ । ୧୭ ।
ସୂକ୍ଷ୍ମତତ୍ତ୍ୱଦର୍ଶି ଆହେ ଏ କାହା କୁମର
ସ୍ୱୟମ୍ବରେ ବିଜେ କଲେ ତୁମ୍ଭ ସଙ୍ଗତର ।୧୮ ।
ସେକ୍ଷଣି ଭାଷିଲେ ବିଶ୍ୱାମିତ୍ର ଋଷିବର
ସନ୍ଦେହ-ଘନକୁ ବାତ ଏ ପ୍ରତିଉତ୍ତର । ୧୯ ।
ସୂର୍ଯ୍ୟବଂଶ ଅବତଂସ ଅଯୋଧ୍ୟା-ମଣ୍ଡନ
ସସାଗରା ଧରା ଭୂପ ଭାନୁଜ-ଦଣ୍ଡନ । ୨୦ ।

---

୨୦—ସୂର୍ଯ୍ୟବଂଶ ଅବତଂସ-ସୂର୍ଯ୍ୟବଂଶର ଭୂଷଣ ସ୍ୱରୂପ ଏଠାରେ ଦଶରଥ । ଭାନୁଜ-ଯମ, ଶନି ।



Digitized by srujanika@gmail.com

ଶୂରମଣି ଦଶରଥ–ରାଜ୍ୟ ଅଳଙ୍କାର
ସର୍ବଶ୍ରେଷ୍ଠ ସୁତ ଜ୍ୟେଷ୍ଠ ରାମ ରଘୁବର । ୨୧ ।
ସୁଲକ୍ଷଣ ପୂର୍ଣ୍ଣଚନ୍ଦ୍ର ଏ ବୀର ସୌମିତ୍ରୀ
ସଙ୍ଗେ କଥାରଙ୍ଗେ ଅସିଛନ୍ତି ହେ ଭୂପତି । ୨୨ ।
ସାନ ନ ମଣ ଏ ଦୋହେଁ ନୃପ କୁଳ ଶିଖ
ସାକ୍ଷାତ ଏ ବୀରବଂଶ ସାମନ୍ତ–ପ୍ରତୀକ । ୨୩ ।
ଶର–ହୁତାଶନ ଯା'ର କଳ୍ପ ଭସ୍ମୀଭୂତ
ସୁବାହୁ ମାରୀଚ ବଳ ତୃଣବନ ବତ । ୨୪ ।
ଶ୍ରୀପଦ ରଜ ପରଶେ ଗୌତମ–ସୁନ୍ଦରୀ
ଶାପ ଶେଷେ ଦିବ୍ୟରୂପ ହେଲେ ବିମ୍ବାଧରୀ । ୨୫ ।
ଶ୍ରଦ୍ଧା କରି ଆସିଛନ୍ତି ତୁମ୍ଭ ସ୍ୱୟମ୍ବରେ
ଶିବ ଶରାସନ ଥରେ ଦେଖିବେ ନେତ୍ରରେ । ୨୬ ।
ସ୍ମିତେ ପ୍ରତିବାଣୀ ତାଙ୍କୁ ବୋଇଲେ ଏସନ
ସୁଜ୍ଞାନବନ୍ତ ରାଜର୍ଷି ଜନକ ବଦନ । ୨୭ ।
ସପ୍ତରାଷ୍ଟ୍ର ମରହଟ୍ଟ ମଗଧ ମଦ୍ରାରେ
ସୁଭଟ୍ଟ ଯେ ଯେତେ ଥିଲେ ଅଛନ୍ତି ଏଠାରେ । ୨୮ ।
ସଂସାରେ ନାହାନ୍ତି ଅଉ କେହି ବଡ଼ ଜଣ
ସ୍ୱୟମ୍ବରେ ପାଇବା ପାଇଁକି ରଖି ସ୍ଥାନ । ୨୯ ।
ସୁତା ଲାଗି ଏକା ବଂଶ ଦିନ ହେଲା ଗତ
ସହିଲି ଜଞ୍ଜାଳ ଯେତେ ନ ହୋଇବ ଅନ୍ତ । ୩୦ ।
ଶିବଧନୁବର ଦେଖି କେ ହୋଇଲା ମୋହ
ଶୋଣିତ ବମନେ ଯାଇଁ ମାରିଗଲେ ଦେହ । ୩୧ ।

---

୨୮—ସୁଭଟ–ଉତ୍ତମ ଯୋଦ୍ଧା ବା ବୀର ।

—ଅଣସ୍ତର—

Digitized by srujanika@gmail.com

ସିଂହକା ସୁତ ପର୍ଯ୍ୟେ ହେଲଣି ମୋ ପଣ
ସେହି ଗ୍ରାସେ ନୃପ-ଶକ୍ର-ଶଶୀ ହେବ ଅନ । ୩୨ ।
ଶାରଙ୍ଗ କି ବନ୍ଦୀ ହେବ ଅଶାବନ୍ଧ ପାଶେ
ସାଗର କେ ସନ୍ତରିବ ଶୂନ୍ୟରେ ସାହସେ । ୩୩ ।
ଶମିବ କି ତୃଷା ମୃଗତୃଷ୍ଣା କଲେ ପାନ
ସରଳ ହେବ କି ଶବଧନୁ ମହାଶୂନ୍ୟ । ୩୪ ।
ସହଜେ ମୁକୁର ପ୍ରତିବିମ୍ବ ମୂନବର
ସତେ ଅଲଙ୍ଘନେ ଅଟେ ଶସ୍ତ୍ରି ପ୍ରକାର । ୩୫ ।
ସ୍ୱପ୍ନେ ରାଜଭୋଗ ହେଲେ ତୁଷ୍ଟ କି ତା ସତ
ଶିଖଣ୍ଡି ଶିଖେ ସଖେଳ କାହିଁ ବିକଶିତ । ୩୬ ।
ସୁରେ ପିନା ସୁଧାପାନେ ବୋଲନ୍ତି ଅମର
ଶତ ପୁଣ୍ୟଜନ କାହିଁ ଲଭିବେ ସେ ସାର । ୩୭ ।
ସୁଗନ୍ଧ ଚନ୍ଦନ ତରୁ ଉଟରେ କେଉଁ କାଳେ
ଶୋଭେ କି କର୍କଟୀଲଟି ଦେଖିଛ ନେତ୍ରରେ । ୩୮ ।
ଶିରୀଷ କୋମଳ ସୁକୁମାର ରାଜବଳା
ସ୍କନ୍ଧେ ଗୁରୁଭାର ବହେ ଅଛୁ କେ ଦେଖିଲା । ୩୯ ।
ଶବଭବନ ନିରେଖି ଯବନ କାତର
ଶିବାଳୟ ବୋଲି କେବା କରେ ନମସ୍କାର । ୪୦ ।
ସଦା ସଦାଶିବ ଜଟା-ମଣ୍ଡନ ଗଙ୍ଗାର—
ଈଶ୍ୱର ତେଜ କେ ତୀର୍ଥ ମଣେ କୂପନୀର । ୪୧ ।

---

୩୩—ଶାରଙ୍ଗ-ହାତୀ; ଅଶାବନ୍ଧପାଶେ-ବୁଢ଼ୀଆଣି ଜାଲରେ ।
୩୫—ମୁକୁର-ଦର୍ପଣ;ପ୍ରତିବିମ୍ବ-ଛାୟା; ଶସ୍ତ୍ରି-ମନୁଷ୍ୟ ବା ଦେହ ।
୩୭—ପୁଣ୍ୟଜନ-ଅସୁର ।

—ସପ୍ତମ—

ଶିଖାଅଛୁ ଧନୁର୍ବେଦ ସକଳ ଯାହାର
ସେତ ଅଡ଼ ହୋଇଗଲେ ଏତ ସୁକୁମାର । ୪୨ ।
ଶିଶୁକ୍ରୀଡ଼ା ନୁହେ କେବେ ଧନୁର୍ଭଙ୍ଗ ବୀର
ସହସ୍ରାର୍ଜ୍ଜୁନ ରାବଣ ବାହୁଡ଼ିଲେ ପୁର । ୪୩ ।
ଶଙ୍କ ଆସିଥିଲେ ସେ ତ କଲେ ଧନୁପୂଜା
ସେହିଦନୁ ମ୍ଲାନଭର ହେଲେ ସର୍ବରାଜା । ୪୪ ।
ଶୋଭାଙ୍ଗୀ ଜେମା ଜୀବନ କଲ୍ ମୁଁ ଅପାର
ସତେ କେ ଭାଙ୍ଗିବ ଧନୁ ହେବ ପତି ତାର । ୪୫ ।
ଶୁଣି ଏହା ବିଶ୍ୱାମିତ୍ର ହସି ଧୀରେ କହି
ଶ୍ୟାମଳ ତନୁ ହେ ଧନୁ ଧରିବ କି ଯାଇ ? । ୪୬ ।
ସୌମିତ୍ରୀ ବୋଇଲେ ତହୁଁ ଧୀରେ ମଞ୍ଜୁବାଣୀ
ଶତ ଶତ ଜପଲକ୍ଷ ଦେଲେ ନୃପମଣି । ୪୭ ।
ସାରକ ଅସାର ଏହା ଶୁଣନ୍ତୁ ସେ ଥରେ
ସରୋଜାସନ ବିଧାତା କି କରି ନ ପାରେ । ୪୮ ।
ଶଶୀରେ ରହିଛି ଶଶା ଚନ୍ଦନରେ ବ୍ୟାଳ
ସୁବିଦିତ କୁମ୍ଭସୁତେ ଚଳୁ ସିନ୍ଧୁଜଳ । ୪୯ ।
ଶ୍ମଶାନେ ଈଶାନ ବୁଲେ ବରଜି ଅଳକା
ସର୍ପଶେଯେ ଶୟନ ଭକତ ପ୍ରାଣସଖା । ୫୦ ।
ଶ୍ରୀବତ୍ସ କରେ ତ ପଦାଘାତ ତାଙ୍କ ବକ୍ଷେ
ସଂସାରେ ବିଧାତା ବଡ଼ ନ ଜାଣେ ପ୍ରତ୍ୟକ୍ଷେ । ୫୧ ।
ଶୀଘ୍ରେ ଅଣ ତ୍ରମ୍ବ ଧନୁ ଦେଖନ୍ତୁ ରାଘବ
ସୁତାପଣ-ସିନ୍ଧୁ ପାର୍ଶ୍ୱେ ଏ କୁମ୍ଭସମ୍ଭବ । ୫୨ ।

---

୪୯—ବ୍ୟାଳ-ସାପ; କୁମ୍ଭସୁତ-ଅଗସ୍ତି ।

—ଏକତ୍ରିଶ—

Digitized by srujanika@gmail.com

ସିନ୍ଦୂର ଲଗାନ୍ତୁ ରାଜ ପୁରେ ତୁମ୍ଭ ଜେମା
ଶ୍ରୀରାମେ ବରିବା ପାଇଁ ଡମରୁ–ମଧ୍ୟମା । ୫୩ ।
ସହଜେ ଶୁକ୍ଳ ଦ୍ୱିତୀୟା ହେଲା ଏହିଗିର
ଶ୍ରୀମୁଖେ ଉଦୟ ହାସ–ଶଶୀ ଜନକର । ୫୪ ।
ଶକଟ ଆଣିବା ପାଇଁ ଆଦେଶିଲେ ରାଜା
ଶତାନନ୍ଦ ଅଣାଇଲେ କରି ଧନୁ ପୂଜା । ୫୫ ।
ଶବଦ ଯେ ରଠମଠ ଘନ ଘଡ଼ଘଡ଼ି
ସତେ ସଂସାର ଯିବ କି ରସାତଳେ ପଡ଼ି । ୫୬ ।
ସ୍ରୋତ ସମ ଶ୍ରମବାରି ବହେ କଳେବରୁ
ଶତେ ବୀର ଏକାବେଳେ ଶକଟ ଉଠାରୁ । ୫୭ ।
ସ୍ଥିତ କଲେ ଧନୁବର ଆଣି ସେ ସଭାରେ
ସକଳେ ବିଲୋକି ତାକୁ ରହିଲେ ଲୋଭାରେ । ୫୮ ।
ସେହିକ୍ଷଣି ବିଶ୍ୱାମିତ୍ର ବୋଲନ୍ତି ହେ ଶ୍ରୀରାମ
ଶୁଭକାର୍ଯ୍ୟରେ ବିଳମ୍ବ କିପାଁ ଗୁଣଗ୍ରାମ । ୫୯ ।
ସଉମିତ୍ରୀ କରେ ଦେଇ ନିଜ ଧନୁଶର
ସିଂହ ସମ ଠାଣି ପ୍ରକାଶିଲେ ରଘୁବର । ୬୦ ।
ଶୁତିବେଳେ ଏହିକାଳେ ତୁନି କରି କହି
ସଉମିତ୍ରୀ, ଶିର କେବେ ନ ଦେବ ନୁଆଁଇ । ୬୧ ।
ସାରିବ ସେ ଆମ୍ଭ ରବିକୁଳର ମହତ୍ତ୍ୱ
ସମସ୍ତଙ୍କୁ ନମସ୍କାର ହୋଇଲା ପରତ । ୬୨ ।
ସୁବୁଦ୍ଧି ମନ୍ତ୍ର ଚଳିଲେ ମଞ୍ଜୁଷା ପାରୁଶ
ଶୀଘ୍ରେ ଫିଟାଇ ଅର୍ଗଳ ହେଲେ ହସ ହସ । ୬୩ ।

—ବାସ୍ତସ—

Digitized by srujanika@gmail.com

ଶତ ସୂର୍ଯ୍ୟ ସମ ଧନୁକାନ୍ତି ଝଲସିଲା
ସକଳ ନୃପତି ଚିତ୍ତେ ଚମକ ଜନ୍ମିଲା । ୬୪ ।

ଶ୍ରୀରାମେ ଜାଣିଲେ ଧନୁ ଏ ନଷ୍ଟ ଶ୍ରୀଧର
ସ୍ତୁତି ଆରମ୍ଭିଲେ ଦେବ ପ୍ରାଣ ରକ୍ଷାକର । ୬୫ ।

ସାରବ କି ମୋ ମହତ୍ତ୍ୱ ରବିକୁଳ ଗୁଣି
ଶିବ ଶରାସନ ଅଟେ ତୁମ୍ଭେ ତ ସୁଜାଣ । ୬୬ ।

ସମରପ୍ରିୟ କ୍ଷତ୍ରିୟେ ହେଲେଣି ନିରାଶ
ସହିଲଣି ତାଙ୍କ ତେଜ ଏ କଥା ନ ଭାଷ । ୬୭ ।

ସାନ୍ତ୍ୱନା ଏପରି ଦେଇ ରଘୁକୁଳମଣି
ଶରାସନ ମଞ୍ଜୁଷରୁ ଆଣିଲେ ସେ ଟାଣି । ୬୮ ।

ସୁମନ ମାଳିକା ଯଥା ହରଷ ମତିରେ
ସୁରସିକେ ମାଳାକାର ଦେଖାଏ କଣ୍ଠରେ । ୬୯ ।

ଶାରଙ୍ଗଧର ସେ ଧନୁ ଧଇଲେ ସେପରି
ସ୍ତୁତି ମୂଳ ଯାଏ ଦେଲେ ଆମନ୍ତ୍ରଣ କରି । ୭୦ ।

ସର୍ପରାଜ ସ୍ତୁତି କଲେ ଥୋଇ ଧରଣୀରେ
ଶ୍ରଦ୍ଧା କରି ହୁଳ ବୃଦ୍ଧାଙ୍ଗୁଳି ପିଠିରେ ଦେଲେ । ୭୧ ।

ସୁଗୁଣବନ୍ତ ଯେ ଗୁଣ କରନ୍ତେ ପ୍ରଦାନ
ଶବ୍ଦ ହେଲା ଏକାବେଳେ ଲକ୍ଷେ କୋଟି ଘନ । ୭୨ ।

ଶିଶୁ ଯଥା ଇକ୍ଷୁଦଣ୍ଡ ଭଙ୍ଗେ ଅନାୟାସେ
ସେପରି ଦ୍ୱିଖଣ୍ଡ ରାମ କଲେ ତାକୁ ହାସେ । ୭୩ ।

ସ୍ୱନେ ଚମକିତ ହେଲେ ଊର୍ଦ୍ଧ୍ୱରେତା ଗଣ
ସମାଧି ତେଜିଲେ ମନ ହୋଇଗଲା ଆନ । ୭୪ ।

—ଭେଷ୍ଟରା—

Digitized by srujanika@gmail.com

ଶଙ୍କର ମୋହନୀ ଉମା ମାନ ଗର୍ବ ଭଞ୍ଜ
ସତେ ମେରୁ ଶତଶୃଙ୍ଗ ପଡ଼ିଲା କି ଅଜ । ୭୫ ।
ସୀତାଙ୍କ ହୃଦୟାକାଶେ ପ୍ରେମ—ବାରିଧର
ସେକ୍ଷଣି ଆସିଲା ଉଇଁ ବରଷିବ ନୀର । ୭୬ ।

ସୁନାସୀର ଶୂନ୍ୟେ ଥାଇ ପୁଷ୍ପ ବୃଷ୍ଟି କଲେ
ସୁସ୍ୱରେ କିନ୍ନରୀ ଗଣ ସଙ୍ଗୀତ ଗାଇଲେ । ୭୭ ।
ସକଳ ମୁଖରେ ଶୁଭେ ଧନ୍ୟ ଧନ୍ୟ ରାମ
ସାମାନ୍ୟ ବାଳକ ନୁହେ ଗୁଣେ ଅନୁପମ । ୭୮ ।
ଶୁରେଶ୍ୱର ବୋଲି ପୂଜା କଲେ ରଘୁତ୍ତମେ
ସୁଆସନେ ବସାଇ ଜନକ ମନୋରମେ । ୭୯ ।

ସରୋଜ ନୟନେ ଅଶ୍ରୁ ଆସେ ବାରମ୍ବାର
ସତେ ଏତେ ଦିନେ ବିଜେକଲେ ରମାବର । ୮୦ ।

ସରୋଜଗନ୍ଧା ସୁବେଶ କରି ନାରୀଗଣ
ସୁମନ ମାଳିକା କରେ ଅରପି ଯତନ । ୮୧ ।
ସ୍ତୁତେ କରନ୍ତି ତମାଳି ଅରେ ପ୍ରାଣମିତ
ସୁତ ଦଶରଥ ଜାନୁରଥେ ହୁଅ ସ୍ଥିତ । ୮୨ ।

ସୁରତ ପ୍ରବୀଣା ମନୋରଥ ସାର୍ଥ ହେଉ
ସତୀପତ ପଞ୍ଚମୁଖ ଏହି ବର ଦେଉ । ୮୩ ।
ସିନ୍ଧୁରୁ ଇନ୍ଦୁ ବଦନା ରମା ରସାଳସା
ସଭଙ୍ଗେ ଅସିଲା ପର ଦର୍ଶିଲା ସହସା । ୮୪ ।

ସୁଚୀର ବିତାନ କି ସେ ବୀଚର ସଂଜାତ
ସହଜେ ସ୍ପଷ୍ଟ କି ଅମ୍ବୁନିଧି ସଖି ବ୍ରାତ । ୮୫ ।

—ଇତ୍ୟସ୍ତୁ—

Digitized by srujanika@gmail.com

ଶୁକ୍ରର ଚମକ ବାଳା ବଳା–ନିନାଦରେ
ସ୍ବାଗର ଉପମା ହେଉ ସ୍ବର କ ବାଦରେ । ୮୬ ।
ସରସେ ମଣ୍ଡିବା ପାଇଁ ଲବଣ୍ୟ–ବାରିଧି
ସମ୍ପତନେ ସମ୍ଭାର ତ କରୁଅଛୁ ସିଦ୍ଧି । ୮୭ ।

ସ୍ତନ-ମନ୍ଦରେ ହୃଦରେ ବାହୁ–ନାଗରାଜ
ସୂଛନ୍ଦେ ଛନ୍ଦଛୁ ଅହା ଗ୍ରଜା ମନସିଜ । ୮୮ ।
ସୁଧା–ହାସ ମୁଖ–ଇନ୍ଦୁ ଗତ–ଯୌବନତ
ସରସ ହୃଦୟୀ ନେତ୍ର ତୁରଙ୍ଗ ସଂଜାତ । ୮୯ ।

ସରଣୀରେ ଗୃହ ଗର୍ବଶାଳୀ–ହଂସୀଗତ
ସଭା ଶୋଭମୟ କରୁ ଜନକ ଦୁହିତା । ୯୦ ।
ସକଳ ଭୂପତି ମନେ ଭାବିଲେ ଏସନ
ସୁଷମା–ସମ୍ଭାର କେବା କରିବ ବର୍ଣ୍ଣନ । ୯୧ ।
ସତୀସୁତ ବକ୍ର ଭୁରୁ ଏକ ନେତ୍ର କବ
ଶେଷ ଲଭିଲେ କ୍ଷୀରୋଦ ନୀରେ ଉପୁ ଲଭ । ୯୨ ।
ସତେ କେତେ ତପ ଯେବେ ନଥିବ ତାହାର
ସୁଲକ୍ଷଣା ବାମା ସିନା ହେବ ହୃଦ ହାର । ୯୩ ।

ସେକ୍ଷଣି ମିଳିଲେ ବାଳୀ ରାଘବ ପାରୁଶେ
ଶ୍ୟାମଘନେ ବିଦ୍ୟୁପତି ଘେର ନାରୀବଂଶେ । ୯୪ ।
ସୁକଣ୍ଠୀ ଉତ୍କଣ୍ଠୀ ହୋଇ ଗ୍ରମଗଳେ ମାଳା
ସରସେ ଲମ୍ବାଇ ପୁରେ ଗଲେ ନବ ବାଳା । ୯୫ ।
ସୌମିତ୍ରୀ ସହିତ ବିଶ୍ୱାମିତ୍ରେ ସଭା କରି
ସନ୍ଦୁ ଦେଲେ କନକର ଜନକ ବାଂଗୁରି । ୯୬ ।

—ପଞ୍ଚସ୍ତବ—

Digitized by srujanika@gmail.com

ଶୁଭ ପରଶସ୍ତୁ ହେଉ କପାଁ ଯିବ ବେଳା
ଶୁଣି ମନ୍ଦେ ହସି ଭ୍ରାଷେ ସୁମିତ୍ରାଙ୍କ ବଳା ।୯୭।

ସାକେତ ନଗର ଈଶ ତାତ ଦଶରଥ
ସେ ନୃଜାଣି କେଉଁପର ହେବ ଏପରି ତ । ୯୮ ।

ଶତ ମୁଖେ ସୌମିତ୍ରୀଙ୍କ କରଣି ପ୍ରଶଂସା
ଶୁଭଙ୍କ୍ରପି ଶତାନନ୍ଦେ ଅରପି ସହସା । ୯୯ ।

ଶୀଘ୍ରେ ଯାଅ ବୋଲି ରାଜର୍ଷି ଆଦେଶିଲେ
ସହଜେ ଗାଧିଜ ଆଶୀର୍ବଚନ ଭାଷିଲେ । ୧୦୦ ।

ଶ୍ରୀଦୁର୍ଗା ମାଧବ ସୁର ଅହଲ୍ୟା ନନ୍ଦନ
ସଙ୍ଗରେ ଆନନ୍ଦ ମନେ କଲେନ୍ତ ଗମନ । ୧୦୧ ।

ସ୍ତୁତି ଅରମ୍ଭିଣ ରାମ ନରହରି ପଦେ
ସାହା ହୁଅ ବୋଲି ନେଇ ଭୁଜ ଗଦଗଦେ । ୧୦୨ ।

ସତତ ଦାସ ବତ୍ସଳ କରୁଣା ସାଗର
ସୁମନେ ହିରଣ୍ୟ କଲେବର ଯତକର । ୧୦୩ ।

ଶ୍ରୀନୀଳସ୍ତୁ ଅନନ୍ତ ମହିମା ପ୍ରକାଶକ
ଶିବ ବିପ୍ର ସ୍ତୁତ ପୁଣି କରେ ମୁନି ଶିଖୀ । ୧୦୪ ।

---

୧୦୩—(ଶ୍ଳେଷ) ରାମ ଓ ନୃସିଂହ ପକ୍ଷେ—ଦାସ-ଧୀବର; ଭୃତ୍ୟ ବା ଭକ୍ତ; ହିରଣ୍ୟ—ହିରଣ୍ୟାସୁର, ସୁବର୍ଣ୍ଣ; ହିରଣ୍ୟ କଲେବ-ହିରଣ୍ୟାସୁରର କଳା (ଛଟା ବା ଅଂଶ) ହବ (ପତ୍ର) ଛଟା ଯାହାର । ଅର୍ଥାତ୍ ରାବଣରି ହିରଣ୍ୟ ଅବତାର ଭେଦରେ ରାବଣ ହେବା ପୁରାଣ ସମ୍ମତ ।

— ଛସ୍ତ୍ର —

Digitized by srujanika@gmail.com

ଶଶୀଖଣ୍ଡ ଧର ପ୍ରଭୋ ଷଡ଼ାଶ ବାହନ
ପଦ୍ମତରେ ନଗଜାର୍ତ୍ତି ହରଣ କାରଣ । ୧୦୫ ।
ଶହେ ସାତପଦେ ଏଥି ଗ୍ରନ୍ଥ ସମାପତ
ସୀତା ପ୍ରେମ ତରଙ୍ଗିଣୀ ସକାତେ ରଚିତ । ୧୦୬ ।
ସକଳ ଜନଙ୍କ ହୃଦେ ପ୍ରକାଶ ଯାହାର
ସେ ଗ୍ରନ୍ଥକର୍ତ୍ତାର ଶନ୍ତା-ସରୋଜ ନୀହାର । ୧୦୭ ।

---

# ସର୍ଗ ଛଅ

ରାଗ-ରାମକେରୀ

## —ସୀତା ରାମଙ୍କ ବିବାହ ମନ୍ତ୍ରଣା—

ଶୁଣ ଗୁଣବନ୍ତ ନିକର ପୁଣ ପୁଣ ଏ ରସ
ସୁନେ ଜ୍ଞାନ-ସୁନେ ଗୁଣ୍ଠିଣ ଅହା ଅତି ସରସ । ୧ ।
ସୁରରାଜ-ଜାଲ-ଜିତତ ବାରଣାର ଅସନେ
ଶଳାଷ୍ଟର-ଦର୍ପ-ଦଳନ ବସେ ହରଷ ମନେ । ୨ ।

---

୧୦୫—(ଚ୍ୟୁତାକ୍ଷର) ଶଶୀଖଣ୍ଡ ଧର-ଅର୍ଦ୍ଧଚନ୍ଦ୍ର ଧାରଣ କାରୀ ଶିବ; ଶୀଖଣ୍ଡ ଧର-ବେଙ୍କା ଚନ୍ଦ୍ରକ ଧାରୀ ଶ୍ରୀକୃଷ୍ଣ ବା ଭଗବାନ୍; ଷଡ଼ାଶ ବାହନ- ବୃଷଭାରୂଢ଼; ଷାଶବାହାନ-ଗରୁଡ଼ାରୁଢ଼; ନଗଜାର୍ତ୍ତି ହରଣ କାରଣ-ପାର୍ବତୀଙ୍କ ଦୁଃଖ ହରଣର ହେତୁ; ଗଜାର୍ତ୍ତି ହରଣ କାରଣ-ହସ୍ତୀର ଦୁଃଖ ନାଶକ ସ୍ୱରୂପ କୁମ୍ଭୀର ଗଳରୁ ତ୍ରାଣ କରିବା ସମୟରେ ।

୧—ସୁନେ-କୌଶଳରେ ।

୨—ସୁରରାଜଜାଲ-ଇନ୍ଦ୍ରଜାଲ । ବାରଣାର ଅସନେ-ସିଂହାସନରେ ।

—ସତ୍ୟସ୍ତୁ—

ସତ୍ତ୍ୱ କି ହୋଇଛୁ ଲୋଭ୍ରେ ଯେ — ତହିଁ ନାହିଁ ଉପମା
ଶ୍ରୀରାମ ଚରିତ ସ୍ମରନ୍ତି — ବୀରକୁଳ ଚନ୍ଦ୍ରମା । ୩ ।
ସଶ୍ରଦ୍ଧେ ଏ କାଳେ କରକୁ — କୋରକିତ ଜ୍ଞାନେ.
ଶ୍ରୀଘ୍ରମୂରେ କହେ ବେଦକ— — ହସ୍ତ ପଦ୍ମେ ନମିଣ । ୪ ।
ଶ୍ୟାମଳ କୋମଳ ଶ୍ରୀରାମ — ଭଦ୍ର-ବାରତା ଧର
ସ୍ଥିତ ସିଂହଦ୍ୱାରେ ତପସ୍ୱୀ — ବୀର କୁଳ କେଶରୀ । । ୫ ।
ସତ୍ତ୍ୱେ କି ଅନେକ ଜନକ — ଜନ୍ମରଙ୍କ ପ୍ରାପତ
ସେପରି ହରଷେ ସରସେ — ଭାଷେ କୋଶଳନାଥ । ୬ ।
ସ୍ଥିତ କର ହୃତ କାରକେ — ଶିରେ; ଅହଲ୍ୟାଜାନ
ସେ କ୍ଷଣି ପ୍ରବେଶି ବଶିଷ୍ଠ — ପଦେ କଲେ ପ୍ରଣାମ । ୭ ।
ସ୍ମିତେ ରାଜା କର ଯୋଡ଼ନ୍ତେ — ସରୂପକେ କହନ୍ତି
ସାବଧାନ ହୁଅ କୁଶଳେ — ଅଛେ କୋଶଳ ପତି । ୮ ।
ସୁତ ରାମଚନ୍ଦ୍ର ତୁମ୍ଭର — ରାମ-ଚନ୍ଦ୍ର ନିଷ୍ଟସୁ
ସଂଲକ୍ଷଣ ହୋଇ ସେବନ— — ବ୍ୟୋମେ ହେଲେ ଉଦୟ । ୯ ।
ସୁନ୍ଦ ନାସ୍ତି-ଘୋର ତାମସୀ — କ୍ଷଣେ ହେଲା ବିଳୟ
ସରଳ ସୁବାହୁ-ମାରୀଚ — ନିଶାଚରଙ୍କ ଭୟ । ୧୦ ।
ଶୂରମଣି ଯଜ୍ଞ-କୁମୁଦ — ବିକଶିତ ହରଷେ
ଶଶିଶିଳା-ସତୀ ଅହଲ୍ୟା — ଅହା ଦ୍ରବିଲେ ତୋଷେ ।୧୧।
ସୁଧାକର ପାନେ ସନ୍ତୋଷ — ବୈଦେହିକ-ଚକୋର
ସରୋଜ-ଭୂପତ ମଣ୍ଡଳୀ — ହେଲେ ଅନତ ଶିର । ୧୨ ।

---

୪—କରକୁ କୋରକିତକରି-କୃତାଞ୍ଜଳି ପୁଟରେ । ବେଦକ ହସ୍ତ-ଦୁଆରୀ ।

୫—ଭଦ୍ର-ମଙ୍ଗଳ; ବାରତା-ଖବର ।

—ଅଠସ୍ତରୀ—

Digitized by srujanika@gmail.com

## ସୀତା ପ୍ରେମ ତରଙ୍ଗିଣୀ

ସଦାଶିବ ଧନୁ ଯାହାର    ଭବେ ମହା ପ୍ରଭାବ
ଶ୍ରଦ୍ଧା ଭରେ ତାକୁ ଭଙ୍ଗିଲେ    ତୁମ୍ଭ ସୁତ ରାଘବ ।୧୩।
ସୀତା–ବୈଦ୍ହଣୀଙ୍କ ସେ ସ୍ୱମ—    ଚନ୍ଦ୍ର କୋଳ ଭୂଷଣ
ସରସେ କରିବେ ଜନକ    ସହଜେ କାର ରାଜନ ।୧୪।
ସତେ ପୌର୍ଣ୍ଣମାସୀ ଚନ୍ଦ୍ରମା    ଦେଖ ଭାରତୀ ଚୟୁ
ସୁଖ ସିନ୍ଧୁ ପଡ଼େ ଉଛୁଳି    ମନ ଆନନ୍ଦମୟୁ ।୧୫।
ସୁମନ୍ତ୍ରେ ଆଦେଶି ଏସନ    ସାଜ ସଇନ ସେନା
ସୁମଙ୍ଗଳ ସ୍ୱରେ ଅଧିକେ    ବାଜି ଉଠେ ବାଜଣା ।୧୬।
ଶ୍ରୀନାଥ ପର୍ଯ୍ୟନ୍ତେ କେ ସେନା    ଚାକ ଭୂଷିତ ହୋଇ
'ଶାରଙ୍ଗ ଧରଣ ଶାରଙ୍ଗ—    ଧର ପର ଶୋଭଇ ।୧୭।
ସପତ ସାଗର ବିଧାତା    କରିଥିଲେ ସର୍ଜନା
ସୈନ୍ୟ–ସିନ୍ଧୁ ସତେ ସୃଜିଲେ    ଦଶରଥ ରାଜନ ।୧୮।
ଶବ୍ଦ 'ଲହରୀ ପର୍ଯ୍ୟନ୍ତେ    ଖଣ୍ଡା–ମକର ଜାଲ
ଶିରସ୍ତ୍ରାଣ ପର ସୁଷମା—    ମୟୂ ଫେନ ପଟଳ ।୧୯।
ସତେ କି କଠୋର କମଠ—    ପୃଷ୍ଠ ଚର୍ମ ସକଳ
ଶ୍ୱେତଧ୍ୱଜବ୍ରଜ ଗତକି    ସିନ୍ଧୁ ଲ୍ୱେଳ–କଲ୍ଲୋଳ ।୨୦।
ସ୍ୟନ୍ଦନ ଅର୍ଣ୍ଣବ ଯାନ ଯେ    ପତି ଭେକ ନାକର
ସେନାପତି ପୋତପାଳକ—    ଦୃଶ୍ୟ ପର ସୁନ୍ଦର ।୨୧।
ସହଜେ ବନ୍ଦର ମିଥିଲା    ତହିଁ ହେବେ ପ୍ରବେଶ
ସାକ୍ଷାତେ ଲଭିବେ ବଧୂଙ୍କୁ    ଅହା ରତ୍ନ ସଦୃଶ ।୨୨।
ସରଣୀ ଦର୍ଶକ ହୋଇଣ    ଶତାନନ୍ଦ ଚଳିଲେ
ସାତ ଦିନ ଅନ୍ତେ ଭୂପତି    ମିଥିଲାରେ ମିଳିଲେ ।୨୩।

—ଅଣାଅଶି—

Digitized by srujanika@gmail.com

ସ୍ନେହଭରେ ତାଙ୍କୁ ଆଲିଙ୍ଗି ନେଲେ ଜନକ ପୁରେ
ସନ୍ଧି ସଙ୍ଗେ ରଜ ମିଶିଲ ପରି ଦିଶିଲା ଖଣ୍ଡରେ । ୨୪ ।
ସୁସ୍ଥେ ସଭା ମଣ୍ଡି ବସନ୍ତେ ଶତାନନ୍ଦ କହନ୍ତି
ସୁତାଗୃହ ସୁଭ ଗୃହଙ୍କୁ ହେବେ ମିଥିଳା ପତି । ୨୫ ।
ଶଶୀ—ରାମଚନ୍ଦ୍ର ଅଙ୍କେ କି ସୀତା ହେବେ ରୋହିଣୀ
ଶେଷ-ଲକ୍ଷ୍ମଣ-ମସ୍ତକରେ ହେବେ ଉର୍ମିଳା ମଣି । ୨୬ ।

ଶୁଭରତ ଏହି ଭରତ କରେ ଭୂପତି ବର
ସୁମୂର୍ତ୍ତି ମାଣ୍ଡବୀ ଛନ୍ଦବା ପରି ଏହି ବଗୁର । ୨୭ ।
ଶତ୍ରୁଘନ-ଅଙ୍କେ ଥିବେ ସୌଦାମିନୀ ସମାନ
ଶ୍ରୁତକୀର୍ତ୍ତି ନବ-ରୂପସୀ— ବର କୋଶଳ ରାଣୀ । ୨୮ ।

ସରସ ହୋଇଲା ସାରସ— ମୁଖ ଭୂପତିଙ୍କର
ସୁମନେ ଆଦେଶ ବହିଲେ ଅନ୍ୟ କନ୍ୟା ନିକର । ୨୯ ।
ସପ୍ତ-ଭୂମଣ୍ଡଳେ ରାଜିତ କନ୍ୟା ସକଳେ ଅପି
ଶୋଭାପୁଷ୍ପ ସମ ସୁନ୍ଦରୀ ଚମ୍ପୂ ଶୋଭା ପ୍ରକାଶି । ୩୦ ।

ସୁକୁନ୍ତଳ କାଞ୍ଚୀ କଣ୍ଠକ ଶୈଳ ଶୋଭିତ ଦେହା
ସୁମନସ ଚମ୍ପାକଳିଙ୍ଗନା ପାଣ୍ଡ୍ୟହ୍ରୀନତା ଅହା । ୩୧ ।
ଶ୍ୱେତଦ୍ୱୀପ-ମନ୍ଦଗମନା ଚୀନାଂଶୁକ ଧାରିଣୀ
ସଦା କାଶ୍ମୀରଜ ଶୋଭିତା ବ୍ରହ୍ମ ମନମୋହିନୀ । ୩୨ ।

ସୁଖେ ମାଳବରେ ଯୁକତ ମତ୍ସ୍ୟ ନେହା ସକଳ
ଶ୍ରୀନଗର ଯେଣୁ ଏ ରତ୍ନ— ପୁର ଶୋଭନ୍ତି ଠୁଳ । ୩୩ ।

ଶୋଭିତ ଅନାଇଁ ଲୋଭିତ ହେଲେ ଅଯୋଧ୍ୟା ପତି
ଶିରମଣି ଦେଲେ ସୀତାଙ୍କୁ ଅତି ହରଷ ମତି । ୩୪ ।

—ଅଶି ଏ—

Digitized by srujanika@gmail.com

ସ୍ମରନ୍ତି ଖଚର ମାଳିକା — ଅନ୍ୟ ତନେକି ଦେଲେ
ସାକେତ ସ୍ନୋ ହେଲ ପବନ — ବୋଲି ମଧ୍ୟେ ହସିଲେ ।୩୫।
ସ୍ନେହେ ଆଲିଙ୍ଗନ କରିଲେ — ଜନକଙ୍କୁ ବନ୍ଧନ
ଶୁଦ୍ଧାନ୍ତେ ଚଳିଲେ ସେବିକା — ଘେନ ଦୁହିତା ଗଣ ।୩୬।
ଶୁଭଲଗ୍ନ ତାବ ଛୁଟିଲେ — ବାଦ୍ୟ ବିଧି ବିଧାନେ
ସତସିଂଶ ପଦେ ଭୂସୁର — କୁଳାବତଂସ ଭଣେ ।୩୭।

---

# ସର୍ଗ ସାତ

ରାଗ-ମାଳବ

## —ସୀତା ରାମ ବିବାହ—

ସୀତା ଶ୍ରୀରାମ ବିବାହ ବର୍ଣ୍ଣନ ଏ ଛନ୍ଦ
ସୁଧା-ଚନ୍ଦ୍ର-ଚକୋର ଉଲ୍ଲାସକର ବୃନ୍ଦ ।୧।

ଶିଳ୍ପୀଚୟ କି ସେ ମୟ ବିଶ୍ୱକର୍ମା ଗୁରୁ
ନିର୍ମାଣ କଲେ ଛାୟାମଣ୍ଡପ ସୁଚାରୁ ।୨।

ସୁଷମେ ପଞ୍ଚରତନେ ବେଦିକା ମଞ୍ଜୁଳ
ସୂର୍ଯ୍ୟସମ ପଦ୍ମରାଗ ବିକାଶୁ କେବଳ ।୩।

---

୨— ମୟ-ଅସୁରଶିଳ୍ପୀ; ବିଶ୍ୱକର୍ମା-ଦେବଶିଳ୍ପୀ, ଛାୟାମଣ୍ଡପ-ଛାମୁଣ୍ଡିଆ ।

୩—(ଶ୍ଳେଷ) ପଦ୍ମରାଗ ବିକାଶୁ-ପଦ୍ମ ଫୁଲର ସ୍ନେହ ପ୍ରକାଶ କରୁ; ଅର୍ଥାତ୍ ପଦ୍ମଫୁଲକୁ ପ୍ରସ୍ଫୁଟିତ କରୁ; ପଦ୍ମରାଗମଣି ପ୍ରକାଶିତ ହେଉ ।



Digitized by srujanika@gmail.com

ଶତମନ୍ୟୁ ପରି ବଜ୍ର ଧରିବାରୁ ହେଲ
ସୁମନା ରତି କି ମାରକତରୁ ହୋଇଲ । ୪ ।
ସଘନ ବନାଳୀ ପରି ବିଦ୍ରୁମ ସଙ୍ଗମେ
ଶାମ୍ବୁକ କି ମୋତିପନ୍ତି ଖଞ୍ଜିତ ସୁରମ୍ୟେ । ୫ ।
ଶୁଭେ ଗୃହସ୍ତମ୍ଭ ପୋତୁଁ ଦିଶେ ସୁଶୋଭିତ
ସୁଚନ୍ଦ୍ରାତପ ଅଚ୍ଛାଦୁଁ ମୋହିଲ ଜଗତ । ୬ ।
ସୁଧର୍ମା ଋଷି କି ଅବା ଏଠାରେ ବସିଲ
ଶୋଭିରମ୍ଭା ରମ୍ଭା ଲଗ୍ନେ ଏମନ୍ତ ଦିଶିଲ । ୭ ।
ଶିରୀ ହରିତବସନ ମଣ୍ଡିଣି ହୁଅନ୍ତେ
ଶ୍ରୀନିବାସପୁର ପରି ହୋଇଲପରତେ । ୮ ।
ସତେ କି ନାକ ନାଗରୀ ଗୁରୁ ଅଭିଶାପେ
ସୁମଞ୍ଜୁଳା ଏ ବ୍ୟାଜରେ ରହିଲ କି ଗୋପ୍ୟେ । ୯ ।
ସୁଗୁମ୍ଫରିକେଶୀ ପୁଣି ସ୍ତନ-ପୟୋଧର
ସୁମନହାସୀ ନବୀନା ଦିଶଇ ସୁନ୍ଦର । ୧୦ ।

---

୪—(ଶ୍ଳେଷ) ଶତମନ୍ୟୁ-ଇନ୍ଦ୍ର; ବଜ୍ର-ହୀରା; ଇନ୍ଦ୍ରାୟୁଧ; ମାରକତରୁ—କନ୍ଦର୍ପ ନିକଟରୁ (ସାନ୍ନିଧ୍ୟ); ମର୍କତମଣି ସମ୍ବନ୍ଧୀୟ—ମଣି ଯୋଗରୁ ।

୫—ବନାଳୀ-ମହାବନ; ବିଦ୍ରୁମ-ପୋହଳା ଓ ପଲ୍ଲବ ।

୬—ଚନ୍ଦ୍ରାତପ-ଚାନ୍ଦୁଆ ।

୭—ସୁଧର୍ମା-ଦେବସଭା; ରମ୍ଭା-ଦେବ ବେଶ୍ୟା ଓ କଦଳୀ ଗଛ ।

୮—ଶିରୀ-ଲକ୍ଷ୍ମୀ; ଶୋଭା; ହରିତବସନ-ପୀତାମ୍ବର, ନାରାୟଣ; ଶାଗୁଆଳିଆ; ଶ୍ରୀନିବାସପୁର-ବୈକୁଣ୍ଠ ।

୯—ନାକନାଗରୀ-ଅମରୀ, ଦେବସ୍ତ୍ରୀ ।

—ବିଯୁଆଣି —

Digitized by srujanika@gmail.com

ସୁବରଣ ଘେରାଇଲେ ମକର ଲଗନେ
ସତେ ପୃଥ୍ୱୀପ୍ରତିମା ଲେଖି ସାଗର ସମାନେ । ୧୧ ।
ଶୁଭ ଆଡ଼ମ୍ବର ହେଉ ସନ୍ଧ୍ୟା ହେଲା ଆସି
ସୁଧାକର ଉଦେ କଲେ ଦେହେ ଚନ୍ଦ୍ର ଘଷି । ୧୨ ।
ସଙ୍ଗ ପ୍ରଦୋଷରୁ ଅବା ବସୁଧା-ନାଗରୀ
ସୁର-ତରଙ୍ଗିଣୀରେ କି ସ୍ନାନ ବାଞ୍ଛା କରି । ୧୩ ।
ସୁମନଶର ସୁମନେ ବରଷି ମାରଣେ
ସାଜଲା ହୀରାରଥାଙ୍ଗ କି ଅବା ଗଗନେ । ୧୪ ।
ସୁଷମ ରଜତାମ୍ବର ତାରକା ଖଚିତ
ସୁମନେଷୁ ପ୍ରେମ ଶ୍ଳୋକ କବିତା-ସନ୍ଦୋହ । ୧୫ ।
ଶର୍ବରୀ କ୍ରମଶ ହେଉ ଗନ୍ଧଫଣ ବୃଦ୍ଧି
ସାଜିଲେ ବେନି ନବରେ ଯଥା ପୂର୍ବସିଦ୍ଧି । ୧୬ ।
ସୂର୍ଯ୍ୟ କି ଅବା ସେ ହେଲା ମନସିଜ ସମ
ଶୋଭେ ନାରୀକେଳ ତୀରେ ଅହା କି ସୁଷମ ।୧୭ ।
ସ୍ୱାମୀ ବିରହ କାତରା ବିରହିଣୀ ପରି
ସେକ୍ଷଣି ଧଇଲା ତାକୁ ଦବାଙ୍କୀର୍ଣ୍ଣ ନାରୀ । ୧୮ ।
ସରିତ ଈଶୁଁ ବଳିଲା ଦୀପାବଳୀ ଧରି
ସାକ୍ଷାତେ କବି ଦୃଷ୍ଟିକି ହେଲା ଏ ଚାତୁରୀ । ୧୯ ।

---

୧୨—ଚନ୍ଦ୍ର-କର୍ପୂର ।

୧୩—ପ୍ରଦୋଷ-ପ୍ରକୃଷ୍ଟ ଦୋଷ ବା ମହାଦୋଷ, ସନ୍ଧ୍ୟା ।

୧୭—(ଶ୍ଳେଷ) ସୂର୍ଯ୍ୟ-ତୁଲ୍ୟ; ମନସିଜ-କନ୍ଦର୍ପ; ନାରୀ କେଳିତରେ-ସ୍ତ୍ରୀ ରତି ସହିତ; ନଡ଼ିଆ ଓ କାଣ୍ଡରେ ।

୧୮—(ଶ୍ଳେଷ) ଦବାଙ୍କୀର୍ଣ୍ଣ ନାରୀ-ଦଣ୍ଡାଗ୍ନିଣୀ ।

୧୯—(ଶ୍ଳେଷ)ସରିତଈଶ-ସମୁଦ୍ର । ଦୀପାବଳୀ-ଦୀପ ସମୂହ,ଦ୍ୱୀପ ସମୂହ ।

—ତେୟାଅଶି—

Digitized by srujanika@gmail.com

ସତେ କି ଦ୍ୱାରକା ଛବି କବି ବଚନରେ
ସଙ୍ଗେ ପୀତାମ୍ବର ପତ୍ରୀବର ସଙ୍ଗମରେ । ୨୦ ।
ସହଜେ ତ ଲାଙ୍ଗଳୀ ସହିତ ଅଛୁ ହୋଇ
ଶତପର୍ବା କୋଳେ ଶୁକ୍ର ମହର୍ଷି କି ଏହି । ୨୧ ।
ଶୋଭାରମ୍ଭା ରମ୍ଭା ଭଦ୍ରକୁମ୍ଭ ତାର ପାଶେ
ସରସେ ନଳକୁବର ଛବି ପରିହାସେ । ୨୨ ।
ସାଦୀ ପରି ବାଜିବାରେ ବାଦନ କି ଶୋଭା
ସତେ ଅଳଙ୍କାର ଶାସ୍ତ୍ର ପରି ଭୀରୁ ଲୋଭା । ୨୩ ।
ସୁବର୍ଣ୍ଣ ବେତଙ୍କ କର ପ୍ରତିହାରୀ ଗଣେ
ସତେ କି ନିଷଧରାଜ ନିଷେଧ କରଣେ । ୨୪ ।
ସ୍ତବକସ୍ତନୀଏ ଦେଇ ହୁଳହୁଳି ମୁଖେ
ସୁଖେ ଚଳନ୍ତି ସେ ଦେବୀ–ମନ୍ଦିରାଭିମୁଖେ । ୨୫ ।
ସାମୁଖ୍ୟେ ନାଚନ୍ତି ଅହା ରୂପାଜୀବା ଗଣ
ସଙ୍ଗୀତଶାଳା କି ମନେ ହୁଏ ଏ ଲକ୍ଷଣ । ୨୬ ।

---

୨୦—(ଶ୍ଲେଷ) ପୀତାମ୍ବର–ଶ୍ରୀକୃଷ୍ଣ ଓ ହଳଦିଆ ଲୁଗା, ପତ୍ରୀବର–କାଣ୍ଡଶ୍ରେଷ୍ଠ ଓ ଗରୁଡ଼ ।

୨୧—ଲାଙ୍ଗଳୀ–ବଳଦେବ, ନଡ଼ିଆ; ଶତପର୍ବା–ଦୁବ, ଶୁକ୍ରଙ୍କ ସ୍ତ୍ରୀ ।

୨୨—(ଶ୍ଲେଷ) ଭଦ୍ରକୁମ୍ଭ–ମାଙ୍ଗଳିକ କଳସ, ଯଷ ବିଶେଷ । ନଳକୁବର–କୁବେର ପୁତ୍ର ।

୨୩—ବାଜିବାରେ–ଘୋଡ଼ା ସମୂହ, ଶବ୍ଦ ହେବାରେ; ବାଦନ–ବାଇଦ; ଭୀରୁ–ସ୍ତ୍ରୀ ।

୨୪—ନିଷେଧ–ମନା କରିବା, ରାଜ୍ୟ ବିଶେଷ; ନିଷଧରାଜ–ନଳ ।

୨୬—ସାମୁଖ୍ୟ–ଆଗରେ; ରୂପାଜୀବାଗଣ–ବେଶ୍ୟାମାନେ ।

—ଚୌରାଅଶି—

Digitized by srujanika@gmail.com

ସୁତନ୍ତ୍ରୀ କି କଣ୍ଠତାନ ଭ୍ରମର-ମର୍ଦ୍ଦଳ
ସୁମଞ୍ଜୁ ନର୍ତ୍ତନ-ଭଙ୍ଗୀ ଲୋଚନ ଚଞ୍ଚଳ । ୨୭ ।

ସମ୍ମୁଖକୁ ଏତେ ଦେନେ ମନସିଜ-ଭୂପ
ସତେ କୈବ ରଥଯାତ୍ରା କରେ କି ଏରୂପ । ୨୮ ।

ସ୍ୟନ୍ଦନ ପତାକା ପରି ଉଡ଼ନ୍ତି ଚଞ୍ଚଳ
ସରସବତୀ ଗଣର ସୁନେତ୍ର ଅଞ୍ଚଳ । ୨୯ ।

ଶ୍ରୀପଦ ମଞ୍ଜୁ-ମଞ୍ଜିର କି ରଥାଙ୍ଗ ଧ୍ୱନି
ସୁମନ୍ଦ ଗମନ ରଥ ଗତି ହୁଏ ଘେନି । ୩୦ ।

ସରସ ଅନନବାଦ୍ୟ ଭଲ ଭଲ ରବ
ସୁକେଶୀଏ ମିଳି ଦେବୀ ପୂଜା ସମ୍ଭବ । ୩୧ ।

ସନ୍ଧ୍ୟାର ଶେଷକୁ ହେଲା ରଜନୀ ପାହାନ୍ତି
ସୁମନା କୋକିଳବୃନ୍ଦ ବଧି ଅଚରନ୍ତି । ୩୨ ।

ସରୋଜଗନ୍ଧା ଭଗିନୀମାନେ ସର୍ବାଳୀ
ସେକ୍ଷଣି ଗୃହସ୍ଥ ବଧୂ ସିଦ୍ଧି କଲେ ଭଲ । ୩୩ ।

ଶାକ ଦଳି ଶ୍ରୀପଦରେ କଲେ ପୁଗଫଳ
ଶିବ ପୂଜା କଲେ ବାମା ବରାଜ ମଣ୍ଡଳ । ୩୪ ।

ଶୁଭ ମହୋତ୍ସବ ପୂର୍ଣ୍ଣ ହେଲା ରାଜାଦ୍ୱାର
ସତେ ମୂର୍ତ୍ତିମନ୍ତ ହେଲା ଋତୁ କି ଆସାର । ୩୫ ।

---

୨୭—ସୁତନ୍ତ୍ରୀ-ଭଲବୀଣା ।

୨୮—କୈବ-ଜୟକାରକ ।

୩୫—ଆସାର ଋତୁ-ବର୍ଷା ଦିନ ।



Digitized by srujanika@gmail.com

ସିଂହାର ଜଳଦରସ୍ଥ ବୃଷ୍ଟି ମଦବାର
ସ୍ତନିତ ପଟହ ନାଦ ଦିଗନ୍ତରେ ପୁର । ୩୬ ।
ସୁନାସୀର ଅସ୍ତ୍ରଘୋଷ ନାଗସ୍ୱ-ବାଦନ
ସଚବଗ ତୁରଙ୍ଗ କବା ବଜ୍ରଭୀତ-ଜନ । ୩୭ ।
ସ୍ତୁତ ପଢ଼ି ମାଗଧ କି ଏମନ୍ତ ପ୍ରତୀତ
ସ୍ମରଣେ ବୈଶମ୍ପାୟନ ନାମ ଉଚ୍ଚାରିତ । ୩୮ ।
ଶଚୀଶ କୋଦଣ୍ଡ ପରି ଦଣ୍ଡକେ ଶୋଭିତ
ଶତ ଶତ ଧ୍ୱାଟବଳି ଯା ହୁଏ ପ୍ରକାଶିତ । ୩୯ ।
ଶୂନ୍ୟକୁ ଉତ୍‌ଥିତ ହେଲ ଯେଉଁ ଅଗ୍ନିକଣ
ସୁଧୀଏ କି ବୋଲୁଛନ୍ତି ତା ଜ୍ୟୋତିରିଙ୍ଗଣ । ୪୦ ।
ସୁପୀତ ଚପଳମାଳ ମାଳ ମାଳ ହୋଇ
ଶତଘନବଲ୍ଲୀ ପରି ଅଭ୍ର ପ୍ରକାଶଇ । ୪୧ ।
ସଜ୍ଜିତ ଚୂତ ତୋରଣେ ମାଳିକା ନିକର
ସତେ ଅଶାର୍ଘ୍ୟାଗୃତଙ୍କ ପୟୋଧର ନୀର । ୪୨ ।
ଶଙ୍ଖ-ବକ ଦାତ୍ୟୂହ ମଦ୍ଗୁସ୍ୱ ଘନ ଘୋଷ
ସହଜେ ବର୍ଷାଭିରଣ୍ଡ ଟମକ ନିର୍ଘୋଷ । ୪୩ ।
ଶାମୁକ କି ମଙ୍କମଙ୍କ ଚମ୍ପକ ପ୍ରକାଶେ
ସୁନ୍ଦରୀ ପରିବାସୀଙ୍କ ହୁଳହୁଳି ଘୋଟଷେ । ୪୪ ।

---

୩୬—ସିଂହାର-ହାଣ; ସ୍ତନିତ-ମେଘଗର୍ଜନ ।

୩୮— ମାଗଧ-ଭଟ୍ଟ; ବୈଶମ୍ପାୟନ-ବଜ୍ରବାରକ ମୁନି ବଶେଷ । ଅଗସ୍ତ୍ୟସ୍ଚ ପୌଲସ୍ତ୍ୟସ୍ଚ ବୈଶମ୍ପାୟନ ଏବଚ । ସୁମନ୍ତୁ ଜୈମିନି ଶ୍ଚୈବ ପଞ୍ଚୈତେ ବଜ୍ରବାରକାଃ ।

୪୦—ଜ୍ୟୋତିରିଙ୍ଗଣ-ଜୁଳୁଜୁଳିଆ ପୋକ ।

—ଛୟାଅଶି—

Digitized by srujanika@gmail.com

# ସୀତା ପ୍ରେମ ତରଙ୍ଗିଣୀ

ସୁରୂପା ରୂପାଜୀବାଙ୍କ ପାଟଗ୍ରେଣ୍ଟୀ ମାନ
ସୁରୁଚ କି ଶତ ଇନ୍ଦ୍ରଗୋପ କୀଟଗଣ । ୪୫ ।
ଶିଖୀ ନୃତ୍ୟ କି ନର୍ତ୍ତକି ଗଣଙ୍କର ଭଙ୍ଗୀ
ସଦା ଦାନ ବର୍ଜିତ କି ବର୍ଷୋପଲ ସଙ୍ଗୀ । ୪୬ ।
ସୁବସ୍ତ୍ରାର ଦୁର୍ଦ୍ଦିନ ଏରୂପେ ଭୟଙ୍କର
ଶିଖଣ୍ଡି–ପୁରନ୍ତୁ ବାହାରିଲେ ସୈନ୍ୟବର । ୪୭ ।
ସୁବିଶାଳ ରାଜମାର୍ଗେ ନଦୀସମ ବନ୍ଧ
ସେତୁ ପରି ଜନକର ସିଂହଦ୍ୱାରେ ରଦ୍ଧ । ୪୮ ।
ସରଣୀ ବରଣ କରି ସ୍ୱଶୁର ଜାମାତାଙ୍କୁ
ସରସେ ଜନକ ନେଲେ ଜନକ ଦେହକୁ । ୪୯ ।

ଶତାନନ୍ଦ କଉଶିକ ବଶିଷ୍ଠ ବାଲ୍ମୀକି
ସୁବେଦ୍ୟ ଯେ ବାମଦେବ ଦ୍ୱିଜ ଆଦ ଠିକି । ୫୦ ।
ସୁ ଲଗ୍ନ ଉଚ୍ଚାରନ୍ତି ମେଘଗମ୍ଭୀର ନିସ୍ୱନେ
ସିଦ୍ଧି କଲେ ଲବଣତ୍ରୟସ୍ତ୍ରୀ ବାଦ୍ୟ ଏତେଣେ । ୫୧ ।

ଶ୍ୱେତସୂକ୍ଷ୍ମ ପଟାଞ୍ଚଳେ ଶ୍ରୀରାମ ଶରୀରେ
ସର୍ଷପ ଲବଣ ଫିଙ୍ଗି ଗଲେ ସୀତା ପୁରେ । ୫୨ ।
ସୁମନୋନେତ୍ର ଉଚ୍ଚାଟନ ପାଇଁ ମନ୍ତ୍ରଧୂଳି
ସଂପାଦ ଫିଙ୍ଗି ଦେଲେ କି ବାଳା ମଇଥିଳୀ । ୫୩ ।

ସୁଯୋଗ୍ୟପ୍ରବାଡ ବରଷିଲେ କନ୍ୟା ପାଶେ
ସାକ୍ଷାତ ଦର୍ଶନ ପାଇଁ ଦୂତୀ ପରି ହାସେ । ୫୪ ।

ସବାଧିରେ ବିଭୂଷିତ କରି କନ୍ୟାଗଣ
ସରସେ ବସାଇ ବାମ ପାଶେ ଜଣେଜଣ । ୫୫ ।

—ସତାଅଶି—

Digitized by srujanika@gmail.com

ଶାଖୀ ବାଞ୍ଛାଚୟର ପାଳୁଚଣେ କାମଧେନୁ
ଶୋଭିତ ହେଲକ ଏହୁ ଭାବ ଜାତ ମନୁ । ୫୬ ।
ସୁଷମ ଶ୍ୟାମଳ କରେ କନକ ଦେହାର
ଶୀକର ଶୋଭୁଛି କଲ ଉପମା ଅପାର । ୫୭ ।
ସୁତେଜ ନୀଳମଣି ଉପରେ କି ସତେ
ସୁମନେଷୁ ସ୍ୱୀୟ ଘର ଦେଖୁ ହରଷିତେ । ୫୮ ।
ସୁବେଦୀ ବପ୍ରେ ବାନ୍ଧିଲେ କୁଶ କରକଣ
ଶୁଭବେଳେ ଅହୋ ଏକ ଅସମ୍ଭବରସ । ୫୯ ।
ସତେ ଜୀବନରେ କେଉଁ କଥା ଅସମ୍ଭବ
ଶସ୍ୟ ପୂର୍ଣ୍ଣ ହୁଏ ମରୁ ଶୁଙ୍ଗେ ସିନ୍ଧୁ ଗର୍ଭ । ୬୦ ।
ସୀତା କର ସତେଜ ସୁଷମା ଯେଣୁ ହରେ
ଶନ୍ଧୁ ଧାତ କଉତୁକୀ ଗୃପଧାସ୍ୱ କରେ । ୬୧ ।
ସୁଶାସକ ଯୋଗୁଁ କି ଜନକ ନୃପବର
ଶାସିଲେ ନବ ଜାମାତା ସୁତାଙ୍କୁ ତାଙ୍କର । ୬୨ ।
ସୁକଠୋର ନୀରପେକ୍ଷ ଧନ୍ୟ ରାଜନୀତ
ସତ୍ୟ ଜାଲେ ବନ୍ଧି ସିନା ହୁଅନ୍ତି ନୃପତ । ୬୩ ।
ସ୍ନେହ ମମତାର ତହିଁ ନାହିଁ ଅବକାଶ
ସୁଖାନନ୍ଦ ଜଳାଞ୍ଜଳି ପ୍ରକୃତି ସକାଶ । ୬୪ ।
ସୁଯତନେ ପାଠେଇଲ ଗଇଣ୍ଠାଳ ସାଜ ।
ସେକ୍ଷଣି ପୁରକୁ ନେଲେ ପରବାସ୍ୱ ରାଜ । ୬୫ ।
ଶୁଭେ ଅନନ-ବାଦନ କମ୍ପୁଛୁ ଗଗନ
ସୁମନାଏ ବନ୍ଧାପନା କଲେ ଭିନ୍ନ ଭିନ୍ନ । ୬୬ ।

—ଅଠାଅଶି—

ସୁଖେ ସୁତ ଖେଳସାରି କଲେ ପଞ୍ଚରାତି
ସ୍ୱାମୀ ମୁଖ ଚନ୍ଦ୍ର ତେତେକ ଦେଖି ସୀତା ତୋଷି ।୬୭।
ଶୁଭବେଳେ ସତେ ରାମ ବିବାହ ବିଧାନ
ସୁବୁଦ୍ଧି ଚତୁର୍ଥୀ ମଧୁଶଯ୍ୟା ବିଧି ମାନ ।୬୮।
ସରସରେ ହରଷରେ ଆଉ ସର୍ଗେ ହେବ
ସ୍ମର ଶ୍ରୀରାମ-ଶ୍ରୀମୁଖ-କୁମୁଦ-ବାନ୍ଧବ ।୬୯।
ଶତଜନ୍ମ କଲ୍ମଷ-ଅନ୍ଧାର ହେଉ କ୍ଷୟ
ଶରଣାଗତ ପାଳକ ପ୍ରଭୁ ଦୟାମୟ ।୭୦।

---

## ସର୍ଗ ଆଠ

ରାଗ-ଭୈରବୀ

### —ମଧୁଶଯ୍ୟା ବର୍ଣ୍ଣନ—

୧

ଶବଶ୍ରୀ ହୁଅନ୍ତେ ଆସି    ସକଳ ସୁଗୃହବାସୀ
ସୁରତ ମନ୍ଦିର ସୁଖେ କଲେ ମଣ୍ଡନ
ସମାର୍ଜନ କରି ଧୀରେ    ସମାର୍ଜନୀ ଧରି କରେ
ସିଞ୍ଚି ସୁବାସିତ ନୀରେ କର୍ପୂର ଘନ
ସୁରଭିରେ ମହକେ ପୁର
ସୁକୁନ୍ଦଦଶନା ଶଯ୍ୟା ସାଜ ସତ୍ୱର ।

---

୧— ଶବଶୀ-ସଖି; ସୁରତ ମନ୍ଦିର-କେଳିପୁର । ସମାର୍ଜନୀ-ଛଞ୍ଚୁଣୀ । ସୁରଭରେ-ସୁଗନ୍ଧରେ ।

—ଅଣନଭ—

Digitized by srujanika@gmail.com

୨

ସୁଦନ୍ତୀ ଦନ୍ତ ପଲଙ୍କେ    ଶଯ୍ୟା ବିରଚି ପଲ୍ଲକେ
ସୁକୋମଳ ଉପାଧାନ[୧] ନୀଳ ବସନେ
ଶ୍ରୀଙ୍କର ଶ୍ରୀପଦ ପାଇଁ    ସୁନେତ୍ରା ମୁଚୁଳି ଦେଇ
ସଙ୍ଗୀତ ଗାଇଲେ ବାମା ମଧୁ ନିସ୍ୱନେ
ସଖି କେବା କରେ ତମାଳ
ଶ୍ରୀରାମ ଅଳିଙ୍କ ସୀତା ସରୋଜ ଭଳି ।

୩

ସୁରଭେ ଭର୍ତ୍ତି ଦେହରେ    ସଜିଏ ଅତି ସ୍ନେହରେ
ସୁଚର୍ଚ୍ଚିତ ହେଲେ ତହିଁ ସୁରତ ବନ୍ଧ
ସ୍ୱଚ୍ଛ ଦର୍ପଣ ତା ପରେ    ସୁଲୋଚନା ପ୍ରେମଭରେ
ସାଜିଲେ ଯା' କଲେ ଯୋଗୀ ଋଷିଙ୍କ ଅନ୍ଧ
ସୁତାମ୍ବୁଳ କରଙ୍କେ ଭରି
ଶିରପାଶେ ଯତନରେ ଥୋଇ ଚତୁରୀ ।

୪

ସୌମିତ୍ରୀ ଅଦଙ୍କ ପୁର    ସାଜ ସେହିମତ ଧୀର
ସୁରସ ରଚନା ଗଠଣ ଚଳ ନବରେ
ସୁଭଦ୍ରଦେବୀଙ୍କ ତହିଁ    ସୁବେଶମାନ କରାଇ
ସୀତାଙ୍କୁ ବସାଇ ବାମା ହେମପୀଠରେ
ସଜନିଏ ପୁଷ୍ପ ହାରଙ୍କୁ
ସେକ୍ଷଣି ଫିଟାଇ ଦେଲେ ଘନ କେଶଙ୍କୁ ।

---

୧—ଉପାଧାନ—ତକିଆ ।



Digitized by srujanika@gmail.com

୫

ସୁବର୍ଣ୍ଣ ପ୍ରାଙ୍ଗଣ ପରେ      ସତେ ଅତି ଧୀରେ ଧୀରେ
ସର୍ପ ଅସିତବର୍ଣ୍ଣର କରଇ ଖେଳା
ସୁମନେ ଯାଏ କି ମିଶି      ଶମନ ଭଗିନୀ ପଶି
ସୁରନଦୀ ଜଳରାଶି ସଙ୍ଗତେ ଖେଳା
ଶଶୀ ଅର୍ଦ୍ଧ କଙ୍କତକାର
ସୁଗତ କି ରାହୁ ପରେ ଚନ୍ଦ୍ର ପିବାର ।

୬

ସୁମନା ବାନ୍ଧଲେ ଜୁଡ଼ା      କି ସେ ଯୁବା ଧୈର୍ଯ୍ୟବୁଡ଼ା
ସ୍ୱର୍ଣ୍ଣ କିଅପରୀ ତୁର୍ଣ୍ଣ ହୋଇ ଖଞ୍ଜିଲେ
ସୀମନ୍ତ ସାଜନ୍ତେ ତହିଁ      ଶତେକ ଉପମା ହୋଇ
ଶଶୀ ବେନ ଭାଗ କିବା ନଶିକା କଲେ
ଶିରମଣି ଦିଅନ୍ତେ ବାମା
ସୂର୍ଯ୍ୟପର ହେଲା ଏ ଅଦ୍ଭୁତ ଉପମା ।

୭

ସବଂରପୂ ପୂଜାଦେବୀ      ସ୍ୱରୂପ ଭାବ ବାନ୍ଧବୀ
ସିନ୍ଦୁର ଦେଲାରୁ ହେଲା ଅତି ସୁନ୍ଦର
ଶ୍ରବଣରେ ଦେଲେ କାପ      ସେ ଷଣ୍ଡିଯୁ ଫୁଲରୂପ
ଶର ଗୁଡ଼ କରୁ କିବା ଧରେ ଏଥର
ସିଂହାଣରେ ଚର୍ମ ସକଳ
ସାଜନ୍ତୁ ସଇନନାଥ ବ୍ୟୂହ ଚଞ୍ଚଳ ।

---

୫—ପ୍ରାଙ୍ଗଣ-ଅଗଣା; ଅସିତବର୍ଣ୍ଣର-କଳାରଙ୍ଗର; ଶମନଭଗିନୀ-ଯମଙ୍କ ଭଉଣୀ, ଯମୁନା । ସୁରନଦୀ-ଗଙ୍ଗା । କଙ୍କତକା-ପାନିଆ ।



Digitized by srujanika@gmail.com

୮

ଶିରସ୍ତାଙ୍ଗୀ ତୋଳା ଖେଳା      ସେକାଳୁ ରୁଚିର ଥିଲା
ଶୋଭା ବଢ଼ାଇ ଅଧିକେ ଅଞ୍ଜନ ଦାନେ
ଶ୍ରୁତିମୂଳ ଯାଏଁ ତାରେ      ସଖିଏ ଲମ୍ବି ଦେବାରେ
ସ୍ମର କବା ଧନୁଗୁଣ ଦେଲା ସୁମନେ
ଶତକୋଟି ବାତୁଳ ପର
ସଦା ଖେଳୁଛନ୍ତି କି ତୋଳା ଯଥା ଶଫରୀ ।

୯

ସବୈଜଗନ୍ଧାଙ୍କ ଗଳେ      ସୁବର୍ଣ୍ଣ ମାଳିକା ଦଳେ
ସୁମୁଖୀ ଲମ୍ବାଇ ଦେଲେ ହରଷ ଭରେ
ଶମ୍ଭୁ ଜଟଜରେ ପଶି      ସତେ କବା ବହିଗଲା
ସୁରଧୁନୀ ଧାର ଧାରେ ପ୍ରଖର ଖରେ
ସଦାଶିବଧନୁ ଭଗନ
ସେ ରୋଷକୁ ନାଶକଲେ ବାଳାରତନ ।

୧୦

ସଜନୀଏ ସୁଯତନେ      ସେକ୍ଷଣି ଦେଲେ ରତନେ
ସରୁ ସୂକ୍ଷ୍ମରେ ନିର୍ମିତ ନବ କାଞ୍ଚିଲି
ସ୍ତନେ ଏ ପିଧାନ ହେଲା      ସ୍ଥାଣୁଙ୍କ ଶିରକୁ ଭଲା
ସାର ଦେଲା ଉପମାର ସୃଷ୍ଟି ଯା ଥିଲା
ଶ୍ରୀଭୁଜରେ ସରୁ ଅତୁଲ
ସୁନା ଗୋଟି ସୁନାକାର କରିଲେ ତୁଲ ।

---

୧୦—ପିଧାନ-ଘୋଡ଼ଣୀ, ଆବରଣ ।

—ବସ୍ତ୍ରାନବେ—

Digitized by srujanika@gmail.com

୧୧

ଶୀର୍ଣ୍ଣକଟି କାଞ୍ଚିଦାମ    ସ୍ୱର ଘାଣ ମନୋରମ
ସୁନାଘଣ୍ଟି କ୍ଷୁଦ୍ରତମ ଧ୍ୱଣ କି ଶୋଭା
ଶମ୍ପା ଗୋସ୍ୱାଙ୍କର ଚମ୍ପା    ସ୍ୱଅଙ୍ଗୁଳି ଘରେ ଝୁମ୍ପା
ସୁବର୍ଣ୍ଣ ମୁଦ୍ରିକା କଲା ମାନସ ଲୋଭା
ସହଜେ ତ ମନକୁ କିଣି
ସିଂହ କଟିରେ ପ୍ରକଟି ଉଠେ କିଙ୍କିଣୀ ।

୧୨

ଶ୍ରୀପଦେ ନ କର ହେଳା    ସରସବତୀ ଏ ବଳା
ସଜଲକ୍ଷା ରସ ନେଇ କଲେ ମଣ୍ଡନ
ସ୍ୱର କବା ଏତେ ଧନେ    ସାଉଲ ତେଜ କି ମନେ
ସରଣୀରେ ଯାଉ କର ରକ୍ତବମନ
ସର୍ଗୀ ହେଲେ ଅଶ୍ରୁଫିଟର
ସାଦ୍ଧଲେ ଏଭଳି ବେଶ ଅନ୍ୟ ଉନ୍ନର ।

୧୩

ଶୟନ ମନ୍ଦରେ ରାମ    ସ୍ୱରୂପ କି କୋଟି କାମ
ସନ୍ତୋଷରେ ଶଶିମୁଖୀ ଆଗମ ଗୃହିଁ
ଶେଯେ ନରହିଇ ମତ    ସତେ ମୋର ପ୍ରିୟବତୀ
ସୁବେଶ ପାଉ କି ସର୍ଗୀ ଆଣିଲେ ନାହିଁ
ଶିବ ଅନୁକମ୍ପା ହେ କର
ଶରାସନ ଭଙ୍ଗା ଦୋଷ ମୋର ନଧର ।

---

୧୧—କାଞ୍ଚିଦାମ-ଅଣ୍ଟାସୁତା ।



Digitized by srujanika@gmail.com

୧୪

ସଜନିଏ ଏହୁ କାଳେ ସୀତାଙ୍କୁ ଅଶାନ୍ତ ବୃନ୍ଦେ
ସୂରସେ ତମାଳ କର ନାନାମତରେ
ସୁଦାନ୍ତ, ତୋ ଯଉବନ ସେ ହେଲ କସ୍ତି ସମାନ
ଶ୍ରୀରାମ ମାହୁନ୍ତ ବସି ଗୃଳଟବ ଧୀରେ
ସୁତୀକ୍ଷଣ ନଖ ଅଙ୍କୁଶେ
ସ୍ତନ କସ୍ତିକୁମ୍ଭ ବଦାରବେ ହରଷେ ।

୧୫

ଶତହ୍ରଦା ତୁମ୍ଭେ ସହୁ ସେ ନବୀନ ଘନ ହୋନ୍ତ
ଶଫରୀ ପରି ଚଞ୍ଚଳ ନ ହେବ ଧନ
ସତେ ଅମ୍ଭ ନେତ୍ରମାନ ସ୍ୱତନ୍ତ୍ର କରବ ଭନ୍ନ
ଶ୍ରୀପଦ ସେବୁଛୁ ଅମ୍ଭେ ତୋ ପରିଜନ
ଶିଶୁକାଳ କଥା ଯେତେକ
ସ୍ୱାର୍ମା ପାଇ ଭୁଲ ସତେ ଯିବ ତେତେକ ।

୧୬

ସଖୀ କେ ବୋଲଇ ଶୁଣ ଶ୍ୟାମଘନ ଯେବେ ପୂର୍ଣ
ସରସେ କରିବେ ଗୃହୁ ମନାଳି ମନ
ସଜନି ଗୋ ଅନନ୍ଦରେ ଶୁଣାଇବ ନାହିଁ ବାରେ
ଶାରଦା-ବୀଣା-ଝଂକୃତ-ଜିତ-ବଚନ
ଶେଯେ ଯେବେ ନେବେ ତୁମ୍ଭଙ୍କୁ
ଶ୍ରୀହସ୍ତ ଖସାଇ ଅଣୁଥିବ ତଳକୁ ।

—ଚତ୍ୱାରିଂଶ—

Digitized by srujanika@gmail.com

୧୭

ସ୍ମର-ମାରଣରେ ରାମ ସୁକୁମାର, ତୁମ୍ଭ ନାମ
ସ୍ନେହଭରେ ଡାକିଲେ ଗୋ କୋଟିବ ମଥା
ସୁମନ ଶିରୁ ପକାଇ ଶିଖାଦୀପର ଲଭାଇ
ସଲଜ୍ଜେ ହୋଇବ ଉଣ୍ଡ ନ କହୁ କଥା
ସଖୀଏ କେ ବୋଲେ ଉତ୍ତର
ସିଂହାଣ କର ଗୋ କେତେ ଏ ଛ ମାତର ।

୧୮

ଶିଖୀଗଣଙ୍କ ନର୍ତ୍ତନ ଶିଖାଇଛୁ କିଏ ଧନ
ଶମ୍ବରଧର ଦର୍ଶନ କରେ ବହ୍ୱେଳ
ସୁମନା ହୃଦୟେ ରତ ସାଇଛନ୍ତି କିଏ ଅତ
ସ୍ୱାମୀ ନଟରେଖିଲେ ମତ କପି ଚଞ୍ଚଳ
ସଖି ଯିଏ ହବେ ଯାହାର
ସେ ଲଗି କପାଳି ଏତେ ଶାସ୍ତ୍ର ବଗୃର ।

୧୯

ଶଯ୍ୟାପୁରେ ବସି ରାମ ଶୁଣିବରେ ଶୁଣି ଏମାନ
ସୁମନେ ବଗୃର ପ୍ରଭୁ ମଧୁରେ ହସି
ସରସବତୀଏ ମିଳ ସଲେଲେ କର ତମାଳ
ଶିତକରମୁଖୀ କାଅ ଦେଖି ହରସି
ସତେ ହେବ ବଧୀଇ ପର
ଶୀଦ୍ର ତନ୍ତୁ ଉତ୍ତରଙ୍କ ପକ୍ତିଛା ଧୀର ।

—ପଞ୍ଚାନବେ—

Digitized by srujanika@gmail.com

୨୦

ସୁନାସୀର ଦର୍ପହର          ସେହି ଶିବଧନୁବର
ସହଜେ ଭାଙ୍ଗିଲେ ଏହି ପୁରୁଷୋତ୍ତମ
ସଖିଏ ବଧାଇ କର          ଶ୍ରୀପଦେ ମାଗୁଁ ଏପର
ଶାର୍ଙ୍ଗୀ ଅମ୍ବର ସୀତା ବୀର ସତ୍ତମ
ସେହି କାଳ ବକ୍ରମଠାଣି
ସହଜରେ ପ୍ରକାଶିବ ନାହିଁ ମାଗୁଣି ।

୨୧

ସରସେ ଶୁଣି ଏ ବାଣୀ          ସୂର୍ଯ୍ୟକୁଳ ଚୂଡ଼ାମଣି
ଶବ୍ଦସ୍ୱକେ ସରବତ ନାହିଁ ଜୁମ୍ବର
ସକଳ ପ୍ରଣସ୍ପୁ ସ୍ୱିତ          ଶ୍ୟାମତନୁ ହେ ବନତ
ସୀତା ସଙ୍ଗେ ଜନିଦ୍ର ତ ନ୍ଦୁହ ଅପାର
ସୁକୁମାର ଅଙ୍ଗେ ବାଧିବ
ସିଂହକଟି ସନି ଅନ୍ତେ ଲଜ ଲଭିବ ।

୨୨

ଶୁଣାଇ ଏସନ ବାଣୀ          ସୀତାଙ୍କୁ ରମଣୀ ମଣି
ଶଯ୍ୟାପୁରେ ଡେଣ୍ଟ ସଦେଙ୍କ ହେଲେ ଅନ୍ତର
ଶିରୀଷ ଲବଣୀ ତୁଳା          ସୁକୁମାରୀ ରାଜବାଳା
ଶିର ନୁଆଁ ଇଣ ଉଭା ଧରଣୀ ପର
ସୁଧାକୁମ୍ଭ ବାମ ପାରୁଶେ
ସତେ 'ରଖି ମୋହନୀ କ ବାସବ ପାଶେ ।

—ଛୟାନବେ—

୨୩

ସୁଚନ୍ଦ୍ର ପିତୁଳା ସମ          ଶଯ୍ୟା ଉପରେ ଶ୍ରୀରାମ
ଶଶିମୁଖୀ–ସ୍ମିତ ଦେଖି ନୀରବ ହୋଇ
ସୁମନଶର ଏକାଳେ          ସୁତୀକ୍ଷ୍ଣ ନାରାଚ କରେ
ଶ୍ରୀଅଙ୍ଗେ ବିନ୍ଧନ୍ତେ କାମ କାତରେ ସେହୁ
ସର୍ଧାରେ ଯେ ଅରମ୍ଭି ଗୃହୁଁ
ସଜନି, ମୋ ବାଣୀ ସତେ ମଣିଲ୍ କହୁ ।

୨୪

ସମ୍ଭାଳ ନୋହିଲା ଆଉ          ଶେଯୁ ଉଠି ମହାବାହୁ
ଶୀଘ୍ରରେ ଧରିଲେ ଦେବୀ କୋମଳ କର
ସର୍ଧାରେ ଉଡ଼ନ୍ତେ ପାଶେ          ସେ ଯେ ଲାଜ ଭୟ ବଶେ
ସମୀରଣ ରମ୍ଭାବନ କଲା ପ୍ରକାର
ସକମ୍ପିତ ହୁଅନ୍ତେ ସତୀ
ଶ୍ରୀଅଙ୍ଗେ ଭିଡ଼ିଲେ ରାମ ପ୍ରେମରେ ଅତି ।

୨୫

ସଙ୍ଗୀତ ପ୍ରବୀଣା ପୁଣ          ସେ ଗଣ୍ଡୁ କ ବଣା ଏଣ
ସଲ୍ଲୋଳ ହୁଅନ୍ତି ସେହୁପରି ସୁନ୍ଦରୀ
ଶ୍ରୀହସ୍ତେ ଟେକନ୍ତେ ମୁଖ          ଶିର ନୋଇଁ ସେ ବିମୁଖ
ଶ୍ରୀରାମେ ଉତ୍ତର ନାହିଁ ଗୁମାନେ ସରି
ଶଇଳ ଉରଜା ସ୍ମିତରେ
ସ୍ମରବଶେ ବାତୁଳ ସେ ରାଘବ ଖରେ ।

---

୨୪—ସମୀରଣ–ପବନ; ରମ୍ଭାବନ–କଦଳୀ ବଗିଚା ।
୨୫—ଏଣ–ହରିଣ । ଗଣ୍ଡୁ–ପଲଙ୍କ ।

—ସଭାନବେ—

Digitized by srujanika@gmail.com

୨୬

ଶଙ୍କସ୍ୱ ଯାଉଛୁ ପାହୁ	ସହୁ ଏ ସ୍ୱତ ଇସାଇ
ସୀତା କଷ୍ଟେ ଧୀରେ ଧୀରେ କହୁଲେ ବାଣୀ
ଶସ୍ୱାନ୍ତୁ ମୋ ଯଉବନ	ଶ୍ୟାମଚନ୍ଦ୍ର ହେଲେ ଭ୍ରମ
ସ୍ମୃତେ କେତେ ସୁମନା କ ନୋହୁବେ ସ୍ୱଣୀ
ଶାଣବାଣ ପସ୍ୱଯ୍ୟେ କଥା
ସୀତା ମୁଖୁଁ ଶୁଣି ସ୍ୱମ ମାନସେ ବ୍ୟଥା ।

୨୭

ସେହିଣି ପ୍ରଦ୍ୱୀପ ପାଶେ	ଶପଥ ବାହୁଲେ ତୋଷେ
ଶ୍ୟାମଘନେ ବଦୁ୍ୟପର ମିଶିଲେ ସତୀ
ଶରଣ ବତ୍ସଳ ରଙ୍ଗେ	ଶଙ୍କସ୍ୱ ରତ ପ୍ରସଙ୍ଗେ
ସାରିଲେ; ମିଳନ ମୂର ଦ୍ୱବସ ସ୍ୱତ
ସୀତା ରଘୁନାଥ ଚରଣ
ସଡାଇଶ ପଦେ ଗ୍ରନ୍ଥକାର ଶରଣ ।

---

—ଅଠାନବେ—

Digitized by srujanika@gmail.com

# ସର୍ଗ ନଅ

ସ୍ୱଗ-ରସକୁଲ୍ୟା

## —ହାସ ପରିହାସ—

୧

ସଖୀ ଲଜେ ଲଜେ ଶସ୍ପ ଚେଣ୍ଟି
ସଧୀରେ ଭଉ ଅଲମ୍ବନ ଭଜ
ଶୀର୍ଣ୍ଣକଟିରୁ ଖସିଛୁ ବସନ
ସୁତାମ୍ବୁଲ ବୋଲ ଗଣ୍ଡେ ଶୋଭନୀ
ଶତଦଳ ରୁଚି ନେତ୍ର ଯେ
ଶଙ୍ଖରେ ପକ୍ଷ— କବାଟ ନପଡ଼ୁ
ତୁଳ ଅସ୍ପୃଶ୍ୟ ମାତ୍ର ଯେ ।

୨

ସେକ୍ଷଣି ପାରୁଶେ ମିଳଲେ ବାଳୀ
ସତେ କେତେମତେ କଲେ ତମାଳ
ସଖି ସଜ ସବେ଼କଳୀ ମଳନ
ଷଟ୍‌ପଦ ସଙ୍ଗେ ହେଉ ମିଳନ
ଶାଢ଼ୀ ଧଡ଼ କାଁପ ଖସି ଯେ
ଶଶୀ ସମ ମୁଖ— ଶୋଭା ପାରୁଶରେ
ସୁର-ପାନ ବୋଲ ଦଶି ଯେ ।

—ଅନ୍ନେଶ୍ୱତ—

Digitized by srujanika@gmail.com

୩

ଶଇଳ ସ୍ତ୍ରନା କି ସତେ ରାଘବ
ଶ୍ରୀଅଙ୍ଗେ ଜଡ଼ିଲ ଦେଖାଇ ଭାବ
ସତେ ଅଗ ବଢ଼ି କହିଲ କଥା
ସରସ ଗୃଠୁରେ ଠେକିଲ ମଥା
ଶ୍ରୀଅଙ୍ଗ କି ଦେଲ ବକ ଗୋ
ଶପଥ ତୁମ୍ଭଙ୍କ ଅମ୍ଭର ସଜନ,
ଅମ୍ଭେ ତ ପଦ–ସେବକୀ ଗୋ ।

୪

ସ୍ୱପନ ସମ ତ ପାଇଲ ରାତ
ସୋହାଗ କି ଅବା କରିଲେ ପତି
ସ୍ନେହେ କେଉଁ କଥା ହେଲ ଗୋ ଧନ
ସତେ ନୀରେ କ୍ଷୀର ସମାନ ମନ
ସେହିକ୍ଷଣି ଗଲମିଳ ଗୋ
ସେ ସୁରତ ବନ୍ଧ ତୁମ୍ଭଙ୍କ କି ଅନ୍ଧ
କଟିଥିଲା ମଇଥିଲ ଗୋ ।

୫

ସୁରତ ଶେଷେ କି ରସିକବର
ସରସେ ଫିଟାଇ ଗବାକ୍ଷ ଖର
ଶଶୀଲପନା ଗୋ ବାମ ଜାନୁରେ
ସୁମନେ ବସାଇ ସ୍ତନ–ଯାନୁରେ
ଶ୍ରୀହସ୍ତ କି ଥିଲେ ଦେଇ ଗୋ
ସ୍ନେହଭରେ ସରୁ— ଚୁମ୍ବନ କି କାନ୍ତ
ଗଣ୍ଡେ ଦେଇଥିଲ ସହି ଗୋ

— ଶହେ —

Digitized by srujanika@gmail.com

୬

ସୁରସ–ପ୍ରବୀଣା ରତ ପ୍ରସଙ୍ଗ
ଶିଖିଲ କି କହ କାନ୍ତଙ୍କ ସଙ୍ଗ
ସୁର ପାଠ କିବା ଅଛ ପଢ଼ାଇ
ସଖି ଜଣିଲ କି କରୁ ଲଢ଼ାଇ
ଶ୍ରୀରାମଙ୍କ କାମରଣେ ଗୋ
ସୁରସିକା ଜଣେ ଭଣିଲା ଏପରି
କହ ନ ଜାଣିମା ପଣେ ଗୋ ।

୭

ସତେ କି ଗୋ ବିପରୀତ ରସରେ
ଶୀର୍ଣ୍ଣକଟି ଜଡ଼ ଶ୍ୟାମଘନରେ
ଶତହ୍ରଦା ପରି ଥିବ ତ ଖେଳି
ସିଂହାସନରେ ନାଚ ଭଳିକି ଭଳି ଗୋ
ସ୍ୱର୍ଣ୍ଣନଥ ମନ୍ଦେ ମନ୍ଦେ ଗୋ
ଶିବବାଦ୍ୟ କଟି ପରେ କ୍ଷୁଦ୍ର ଘଣ୍ଟି
ବାଜଥିବ ନାନା ଛନ୍ଦେ ଗୋ ।

୮

ଶଇଳ ସ୍ତନା ଗୋ ସୂର୍ଣ୍ଣ କଟି
ସେକ୍ଷଣି ଭାଜିବା ଦରେ ଗୃହିଁଟି
ସମର୍ପି ଦେଇଥିବ କୁଚ କୁମ୍ଭ
ଶ୍ରୀରାମ କରକୁ ହେବାକୁ ଦମ୍ଭ
ସତୀ ଶୁଣି ଲଜ ଲଜ ଯେ
ସୁଷ୍ଠୀନ ବସନ– ଅଞ୍ଚଳେ ଅବୃତ
କରି ଶ୍ରୀମୁଖ ସରୋଜ ଯେ ।

—ଶହେଏକ—

Digitized by srujanika@gmail.com

ସୀତା ପ୍ରେମ ତରଙ୍ଗିଣୀ

୯

ସୁମନ ମାଳିକା ହରଷ ଭରରେ
ସଖି ଗୁନ୍ଥି ଥୋଇଥିଲେ କର୍ବରେ
ସ୍ମିତ ମୁଖେ ପରୀ ଶ୍ରୀରଘୁନାଥ
ସୁକଣ୍ଠେ ଲମ୍ବାଇ ପରଶ ମିତ
ସ୍ନେହେ କ ଧଇଲେ କୋଳ ଗୋ
ଶ୍ୟାମ ଦେହେ କୁଚ— କୁଙ୍କୁମ ରଙ୍ଗ କ
ଶୋଭା ବଣି କଲା ଠୁଳ ଗୋ

୧୦

ସର୍ଗୋମେଳୁ ଭର୍ଗା ଇଙ୍ଗିତ ଭାଷ
ଶୁଣି ସୀତା ବକେ ଜନନୀ ପାଶ
ଶ୍ରୀପଦରେ ନମି ହୋଇଲେ ଉଭା
ସୁରଭି ପାଶେ କ କପିଳା ଶୋଭା
ସୁଲକ୍ଷଣୀ ହୁଅ ମାଆ ଗୋ
ସୁତଙ୍କର ଯଶ ବଣିରେ ଧବଳ
ହେଉ ବସୁନ୍ଧରା ଆହା ଗୋ ।

୧୧

ଶ୍ୟାମ ବପୁ ବକେ ଭାଇଙ୍କ ମେଳେ
ସାରିଲେ ମର୍ଦ୍ଦନ ମାଜଣା ହେଲେ
ଶେଷ କମେ କମେ ସପ୍ତ ମଙ୍ଗଳା
ସମ୍ବନ୍ଧୀଙ୍କୁ ଡାକ ଅଜଙ୍କ ବଳା
ସଖୀ ହେ ଦଅ ମେଲଣି ଯେ
ସୁମଧୁରେ କହୁଁ ଜନକର ତହୁଁ
ନୟନେ ପୂରିଲା ପାଣି ଯେ ।

—ଶହେଦୁଇ—

Digitized by srujanika@gmail.com

୧୨

ସାଜିଲେ ସଇନ ଗଜ ଅପାର
ଶବଦ କଣିଗଲା ପାରିବାର
ସୁନାସାର ବହୁ ଥିବାରୁ ମେଳେ
ସୁର ପୁର ଶୋଭା ବଢନ୍ତ ବଳେ
ଶୁଭେ ହୁଳହୁଳି ସ୍ୱନ ଯେ
ଶ୍ରୀରାମ ବାହୁଡ଼ା ବିଜୟେ ସୁମନ
ବରଷିଲେ ଦେବଗଣ ଯେ ।

୧୩

ଶୁଣିଲେ କାନ୍ଦିଲେ ସୀତା ଜନନୀ
ଶ୍ରୁତକୀର୍ତ୍ତି ଆଦ ଗୃହ ଭଗିନୀ
ଶିରିଷ କୋମଳା ଆଦର ଧନ
ସତେ ତୁ ହେଲୁ ମୋ ସାତ ସପନ
ଶିଶୁକାଳୁ ଥିଲୁ ପାଳି ଗୋ
ସର୍ବମଙ୍ଗଳା ତୋ ଶୁଭ ମନାସନ୍ତୁ
ଯଶେ ପୂରୁ ମହୀଅଳୀ ଗୋ ।

୧୪

ସୁନାବସା ଗଜଦନ୍ତ ଶିବିକା
ସୁନେତ୍ରା ବିଜୟ ଦେଲ ସେବିକା
ସଙ୍ଗରେ ସେ ଅନ୍ୟ ଭଗିନୀ ତିନି
ସାଶ୍ରୁ ନେତ୍ରେ ରାଜା ଜନକ ପୁଣି
ସର୍ବ ଜାମାତାଙ୍କ ପାଶେ ଯେ
ଶୁଣାଇ ବୋଲନ୍ତି ସମ୍ଭାଳ ଦୁହିତା
ଯମି ଦଶଦୋଷ ହାସେ ଯେ ।

—ଶହେତିନି—

Digitized by srujanika@gmail.com

୧୫

ସମ୍ଭାର ଯଉତୁକ ଗଣି ଗଣି
ସେଷଣି ଜଉତୁକେ ନୃପମଣି
ସୁବର୍ଣ୍ଣ ମାଣିକ୍ୟ ରଜତାବଳୀ
ସୁବସନ ଦାସ ଦାସୀ ଅବଳୀ
ସୁନା ପାଗ ମଖମଲ୍ ଯେ
ସଇନ ପଦାତି ଗଜ ଅଶ୍ୱରଥୀ
ସାଙ୍ଗୀ ପୁଣି ଦଳ ଦଳ ଯେ ।

୧୬

ସୀତା ପାଶେ ବଜେ ରାଘବ ପତି
ଶୂନ୍ୟରେ ଦେବତା ଦେଖୁ ଅଛନ୍ତି
ଶୁଭେ ବଜେଇଲେ ବାଜଇ ବାଜା
ଶ୍ୱେତବର୍ଣ୍ଣ ଧର ଉଡ଼ଇ ଧ୍ୱଜା
ଶ୍ୟାମ ବପୁ ବରବେଶ ଯେ
ଷୋଳ ପଦେ ଶନ୍ତ ସୀତା ରଘୁପତି
ସ୍ଥାନ୍ତିକ ପରମ ତୋଷେ ଯେ ।

---

—ସମାପ୍ତ—

Digitized by srujanika@gmail.com

# ସର୍ଗ ଦଶ

ରାଗ–କଳହଂସକେଦାର

## —ପରଶୁରାମ ଭେଟ ଓ ଅଯୋଧ୍ୟା ପ୍ରବେଶ—

୧

ଶ୍ୟାମ ସୁନ୍ଦର ଗୀତ ଶୁଣ ପଣ୍ଡିତେ
ଶମନ–ଦଣ୍ଡରେ ନ ହୋଇବ ଦଣ୍ଡିତ
ସରସ ରସେ ହୋଇ ଅଛୁ ମଣ୍ଡିତ
ସକଳ କଳମଷ ହେବ ଖଣ୍ଡିତ ଯେ ।

୨

ସୈନ୍ୟ ସମ୍ଭାର ଘେନ ବାଦ୍ୟ ବଜାଇ
ଶତ୍ରୁ ଗାରିମା ଶତ୍ରୁ ବୃତ୍ତି ହଜାଇ
ସକଳେ ଆନନ୍ଦରେ ଚିତ୍ତ ମଜ୍ଜାଇ
ସୁଖେ ଚଳନ୍ତି ଦୁଃଖ ମନୁ ତେଜାଇ ଯେ ।

୩

ଶୂନ୍ୟ ଶୁଭିଲ୍ଲ ରବ ଏହି କାଳରେ
ଶଙ୍ଖକୋଟି କୋଟିଏ ଏକା ବେଳରେ
ସୁର ପର୍ବତ ଶୃଙ୍ଗେ କ୍ରିଡା ବେଳରେ
ସଂଘାତ ହେଲା କି ପ୍ରଳୟ କାଳରେ ଯେ ।

---

୩—ସୁରପର୍ବତ–ମେରୁଗିରି; ସଂଘାତ–ଖ୍ୟପଣ ଭାବରେ ବାଜିବା ।

—ଶହେପାଞ୍ଚ—

Digitized by srujanika@gmail.com

୪

ସଙ୍ଗେ ସଙ୍ଗେ ଅକାଶୁ ପାଂଶ ରୁଧିର
ସେକ୍ଷଣି ବରଷିଲ ଖର୍ପର ଧୀର ହେ
ଶିବାଏ ରାବଗଲେ ହୋଇ ଅଧୀର
ଶୁଷ୍କ ଗଜନ ଦେଖି ବଧି-ବଧିର ଯେ ।

୫

ଶକୁନ ମାଂସ ଖଣ୍ଡେ ଧରି ଅଗରେ
ସ୍ୱନ ବାକୃତ କଲ ଅତି ରାଗରେ
ସେକ୍ଷଣି କୁଜ୍‌ଝଟିକା ଭ୍ରମ ବେଗରେ
ସଂପୂର୍ଣ୍ଣେ ରୁଦ୍ଧ ଦେଲ ଶୂନ୍ୟମାର୍ଗରେ ଯେ ।

୬

ସମ୍ଭାଳ ନ ପାରି ଏ ବିଷମ ଦଶା
ସନ୍ନ୍ୟାସୀ ବଶିଷ୍ଠଙ୍କ ଦୁଃଖେ ସହସା
ଶ୍ରୀକର ଯୋଡ଼ି ଦଶରଥ କହନ୍ତି
ସରଲ ସବୁ ହେଲ, ମହାଦୁର୍ଗତି ଯେ ।

୭

ସରୋଜାସନ ସୁତ ବୋଲନ୍ତି ଧୀରେ
ସାବଧାନ ଭୂପତି ହୁଅ ବାଧିରେ ।
ଶିରେ ପଡ଼ିବ ଭ୍ରମ ଶଇଳ ସମ
ସମ୍ଭବେ ମହା ଘୋର ଦୁଃଖ ବିଷମ ହେ ।

---

୪—ହେ ଧୀର-ହେ ପଣ୍ଡିତ । ଶିବାଏ-ବିଲୁଆମାନେ ।
୫—ଶକୁନ-ଶାଗୁଣା; କୁଜ୍‌ଝଟିକା-କୁହୁଡ଼ି ।

—ଶହେଛ—

Digitized by srujanika@gmail.com

୮

ସବୁ ନ ସରୁ କଥା ଏମନ୍ତ ବେଳେ
ଶୀଘ୍ରେ ହୁଙ୍କାର ପରଶୁରାମ ମିଳେ
ଶରାସନକୁ ବାମ କରେ ଲମ୍ବାଇ
ସୁତୀକ୍ଷଣ ପର୍ଶୁ ଧରି ଅସଇ ଧାଇଁ ଯେ ।

୯

ଶର ଶାୟକ ଘାତ ବ୍ରଣେ ବନ୍ଧୁର
ସେ ଯେ ବିଶାଳ ବକ୍ଷ କି ଭୟଙ୍କର
ସମୀରଣେ ଦୋହଲେ ପିଙ୍ଗଳ ଜଟା
ସାକ୍ଷାତେ ତେଜ କୋଟି ସୂର୍ଯ୍ୟର ଛଟା ଯେ ।

୧୦

ସରୋଷେ ଭ୍ରୁକୁଟି ତା କୁଟିଳାନନ
ସୈନ୍ୟ ବନକୁ କି ସେ ଦାବ ଦହନ ।
ଶ୍ରୀପଦ ପକାଇ ଯେ ଚମକେ ଧରା
ଶୂନ୍ୟ ପଳାଇ ଗଲେ ଅମ୍ବରଚାରୀ ଯେ ।

୧୧

ସଶଙ୍କ ହୋଇ ସୈନ୍ୟ ହୋଇଗଲେ ଭଙ୍ଗ
ଶାର୍ଦ୍ଦୂଳ ଦେଖି ଯଥା ହୁଏ କୁରଙ୍ଗ ।
ସଙ୍ଗତେ ବିଶ୍ୱାମିତ୍ର ବଶିଷ୍ଠ ଘେନି
ସ୍ୱାଗତ ଗାଇ ଅଜ ନନ୍ଦନ ଗ୍ଲାନି ଯେ ।

—ଶଢେସାତ—

Digitized by srujanika@gmail.com

୧୨

ଶୀଘ୍ରରେ ଝମକାଇ ପର୍ଶୁକୁଠାର
ସତ୍ୱରେ ଫିଙ୍ଗି ଦେଇ ପୂଜାସମ୍ଭାର
ସଜାଡ଼ି ଗଲା ମେଘ ଗମ୍ଭୀର ରବେ
ସେକ୍ଷଣି ପର୍ଶୁରାମ ଭ୍ରକ୍ଷେ ଭୈରବେ ଯେ ।

୧୩

"ଶୁଣାନାହିଁ କି କ୍ଷତ୍ରିମର୍ଦ୍ଦନ ହେତୁ
ସୀମାରେ ବୀର ବାଦ୍ୟ ବାଉଛୁ କେ ତୁ ?
ସହଜେ କେତୁ ହେବୁ ପରଶୁଘାତେ
ଦର୍ପ ଚଳାଉ ପୁଣି ଅଣଅଯତ୍ନେ ଯେ ।

୧୪

"ସୁତ ଲାଗିସିନା ତୋ ଗରମା ଏତେ
ସଂଶୟ ହେଉ ନାଶ ଦେଖିବା କେତେ ।
ଶିବଧନୁରେ ଗୁଣ ଦେବା ଶୁଣିଛୁ
ସୁନ୍ଦନାରୀଙ୍କ ଏକା କାଣ୍ଡେ ମାରିଛୁ ଯେ ।"

୧୫

ଶୁଷ୍କ ହେଲା ନୃପତି ବଦନ ଶଶୀ
ସଞ୍ଚିଲା ମୋହ ଯଶ ଅପୂର୍ବ ରାଶି
ଶିଶୁ ମୋ ସୂତ ଦେବ କରିବା ବାହା
ଶିର ହଲାଇ ରାମ ବୋଲଇ ନାହିଁ ଯେ ।

—ଶହେଆଠ—

Digitized by srujanika@gmail.com

୧୬

ଶାସ୍ତ୍ର ମରମ କହୁ ବଶିଷ୍ଠ ଋଷି
ସମଝାଇଲେ ବିଶ୍ୱାମିତ୍ର ହିଁ ମିଶି ।
ଶ୍ରୁତପଥେ କା ବାଣୀ ନ ଦେଲା ବେଷେ
ଶମନ ପର ଧାଏଁ ଶ୍ରୀରାମ ପାଶେ ଯେ ।

୧୭

ଶିଶୁଠାଏ ତୁ ତୋ'ର ଏଡ଼େ ସାହସ
ସାମାନ୍ୟ ଶିବଧନୁ ଭାଙ୍ଗି ସୁତରଶ
ସମାନ ବୋଲି ଗର୍ବେ ଅଯୁକ୍ତ ଚଳ
ସତୀର ଧର୍ମ ସୁତ ମୁଁ ମହାବଳୀ ଯେ ।

୧୮

ଶୁଣି ସୌମିତ୍ରୀ କ୍ରୋଧେ ହୋଇଲେ ଠାଣି
ଶବର ବଶ୍ୟଜାତ ବୋଲୁ ଏ ବାଣୀ
ସୂର୍ଯ୍ୟବଂଶରେ ମୁହିଁ କୁହଇ ଜାତ
ସହୁ ନପାରେ ଅର୍ଘ୍ୟ ନିନ୍ଦା ଯାବତ ଯେ ।

୧୯

ଶିଶୁକୁ ଦୁଗ୍ଧକଣ୍ଠ କହୁଛୁ କାଏ
ଶୁଣେ ତ ବାଣୀ ବିଷକଣ୍ଠ ପରସ୍ପେ ।
ଶରଣ ମାଗ ଦେବୁ କଲ୍ୟାଣ ରାଶି
ଶସ୍ତ୍ର-ଶିଖାବାନ ଦେଲ ପ୍ରକାଶି ଯେ ।

—ଶହେନ—

Digitized by srujanika@gmail.com

୨୦

ଶାଳ ପ୍ରାଂଶୁ ଭୁଜକୁ ହଲାଇ ଦଣ୍ଡେ
ସେକ୍ଷଣି ପର୍ଶୁରାମ କହେ ପ୍ରଚଣ୍ଡେ
ସାମାନ୍ୟ ଯେବେ ନୁହେ ଶ୍ରୀରାମ ତୋର
ଶକତ ହେଉ ଏଥି ପରୀକ୍ଷା ତାର ଯେ ।

୨୧

ସୁଧାସନ୍ନ ଓହ୍ଲାଇ ହରଷଭରେ
ସ୍ମିତେ କହନ୍ତି ରଘୁରାଜ ସଧୀରେ ।
ସାନ ଯେ ଜ୍ଞାନ କାହିଁ ତାହାର ଏତେ
ଶୁଣ ଭୂସୁର ଶାସ୍ତ୍ର-ବାଣୀ ଯେମନ୍ତେ ହେ ।

୨୨

ସିଦ୍ଧ ବ୍ରହ୍ମଣ୍ୟ ପଦ୍ ଦର୍ଶୁଛ ମୋତେ
ସମିଧ କୁଶ ଦେନ ପାଣୀ ସହିତେ
ଶୀତଳ ଜଳେ ପାଦ ପଖାଳ ବସ
ସ୍ମିତେ ଅମ୍ଭଙ୍କୁ ଅଶୀର୍ବଚନ ଭାଷ ହେ ।

୨୩

ସ୍ଫୁଟେ ମାରଣ ବାହୁ ହଲାଇ ପର୍ଶୁ
ସକୋଧେ କହେ ଅରେ ମାନବ ପଶୁ
ଶୂରତା ଅଛୁ ଯେବେ ଧର ମୋ ଧନୁ
ସନ୍ଦେହ ଯାହା ଅଛୁ ତୁଟିବ ମନୁ ରେ ।

—ଶଦେହଦଣ—

Digitized by srujanika@gmail.com

୨୪

ଶୀଘ୍ରକେ ନେଲେ ଧନୁ ଜାନକୀ ବର
ସଶଙ୍କ ହେଲେ ସେନା ସେନାନୀ ବୀର
ସକଳ ବସ୍ତୁ କଲା ସେ ସଙ୍ଗେ ଗଲା
ସେକ୍ଷଣି ପର୍ଶୁରାମ ରାମେ ଛନ୍ଦିଲା ଯେ ।

୨୫

ସାଷ୍ଟାଙ୍ଗ ହୋଇ ଭଣେ ତୁମ୍ଭେ ମାଧବ
ସାକ୍ଷାତେ ଦିବ୍ୟରୂପ ଦେଖିଲି ଦେବ ।
ସମସ୍ତ ଅପରାଧ କ୍ଷମିବା ମୋର
ଶେଷଶାୟୀ ହେ ଗୁଣାମ୍ବୁଜ ଶରୀର ହେ ।

୨୬

ଶର୍ତ୍ତ ଅଛନ୍ତି ଯହିଁ ମାର ଏ ଶର
ସମୂଳେ ନାଶ ହେଉ ପାତକ ମୋର
ସେକ୍ଷଣି ରଘୁପତି କରନ୍ତେ ତହିଁ
ସେ ଜାନୁ ପାତି ଧୀରେ ସ୍ତୁତି ରଚଇ ଯେ ।

୨୭

ସୁଖେ ମାଳଯମକେ ଆରମ୍ଭେ ସ୍ତୁତି
ଶରଣ ରଣରଣ ଜିତ ମୂରତି
ସ୍ୱର୍ଣ୍ଣାଙ୍କୁ ବାହୁ ବାହୁ ବାହୁଜ ବର
ଶରେ ଶରେ ସରେ ତ ଜଗ୍ଗିର ତାର ହେ ।

—ଷଡ଼ଦେଗାର—

Digitized by srujanika@gmail.com

୨୮

ସତେ ଧୀବର ବର ବର ଦାନରେ
ସଦା ଧୀ–ବର ବର ବରଦ ନରେ
ସୀତା ସୁବ୍ରତ ରତ ରତନଟବାଣୀ
ଶଙ୍ଖ ଶଙ୍ଖ ଶଙ୍ଖାର ଦଇତ ନାଶୀ ହେ ।

୨୯

ସ୍ତବେ ସନ୍ତୋଷ ହେଲେ ଭକତ ଧନ
ସ୍ଥାନ ଦେଲେ ମହେନ୍ଦ୍ରାଚଳ ବହନ
ଶ୍ରୀପଦେ ନମି ପର୍ଶୁରାମ ଚଳିଲେ
ସକଳେ ଦେଖି ଏହା ଅଶ୍ଚର୍ଯ୍ୟ ହେଲେ ଯେ ।

୩୦

ସୁମନାମଣି ହେଲେ ସ୍ୱମନା ଅତ
ଶପଥ ଯାଇ ନାହିଁ ଗୋଟିଏ ସ୍ୱତ
ସପତ୍ନୀ ଭୟୁ ମୋତେ ଧନ୍ୟ ଧରମ
ସାଧୁଙ୍କୁ ବଧ୍ୱ ବାଦ କି ଅକରମ ଯେ ।

୩୧

ଶ୍ରବଣ ପାଶେ କହ୍ନ ଶ୍ରୀମୁଖ ଗୋଟି
ଶୀତାଂଶୁ ମୁଖି, ତୁହେ ସ୍ୱବାନ୍ଧ ଏଠି
ଶକତ ପାଇଁ ରତଦାସ୍ୱିନ ଅଟେ
ଶର କୋଦଣ୍ଡ ଧର ହେଲ ଏଠାରେ ଶୟ ।

—ଶହେବାର—

Digitized by srujanika@gmail.com

## ସୀତା ପ୍ରେମ ତରଙ୍ଗିଣୀ

୩୨

ଶ୍ରୀବନ୍ଧୁପତି ଜୟ ଗାଇଲେ ଭାଟ
ସୈନ୍ୟ ସମୂହ କଲେ ଆନନ୍ଦେ ନାଟ
ଶୁକଳ ଧ୍ୱଜା ଉଡ଼ିଗଲା ଅମ୍ବରେ
ଶୁଭେ ପ୍ରବେଶ ପ୍ରଭୁ ସାକେତପୁରେ ଯେ ।

୩୩

ଶ୍ରୀହର କୋଳେ ଗିରୀଶ ଶୋଭା ଯେସନ
ସୁରଧୁନୀ କି ସିନ୍ଧୁ ଅଙ୍କ ମଣ୍ଡନ
ସେପରି ରାମ କୋଳେ ନବ କାମିନୀ
ଶୋଭିଲେ ରତିରସ ପଣ୍ଡିତା ଧନୀ ଯେ ।

୩୪

ଶମ୍ପା କମ୍ପିତ ହେଲା ପରି ଜଳଦେ
ଶ୍ରୀରାମ ବକ୍ଷେ ସତୀ ଶୋଭା ସମ୍ପାଦେ
ଶିଳୀମୁଖ ଚୁମ୍ବନେ ଓଷ୍ଠ-ବନ୍ଧୁକ
ସେହୁ ରସିକ ଚୂଡ଼ାମଣି ପ୍ରତୀକ ଯେ ।

୩୫

ସ୍ତନ ଶମ୍ଭୁ ଅର୍ଚ୍ଚନ ମଦନ ମନ୍ତ୍ରେ
ଶ୍ରୀକର ଚମ୍ପାଦାନେ ହୁଏ ପରତେ
ସମୀରଣେ ଚଳିତ ନୀଳଜଫୁଲ
ସରୋଜ ପରେ ଗନ୍ଧ ଚୁମ୍ବୁ କେବଳ ଯେ ।

—ଶହେଶେର—

Digitized by srujanika@gmail.com

୩୬
ସୁବାହୁ ଅବ ବାହୁ ଛନ୍ଦ ଇଙ୍ଗିତେ
ସରସେ ଭ୍ରମୁ ବେନି ହରଷ ଚିତ୍ତେ
ସୁରମ୍ୟ ଉପବନେ ଧଣେ ଏମନ୍ତ
ଶଶୀ ତାରାଙ୍କ ଘନ ଉଦରେ ଗତ ଯେ ।

୩୭
ସତଙ୍କରଣ ପଦେ ଭକ୍ତ–ସଂପଦେ
ସ୍ମରେ ଗ୍ରାହିକ ସୀତା ଶ୍ରୀରାମପଦେ
ଶରଣ ରଖ ଦେଇ ଚରଣ ଯୁଗ
ସୁନାସୀର ବଲ୍ଲଭ ସେ ଦବ୍ୟ ଭୋଗ ଯେ ।

---

# ସର୍ଗ ଏଗାର

ରାଗ–ଘଣ୍ଟାରବ

## —ନାରଦ ଆଗମନ—

ଶ୍ରୀରାମ ରସ କହିବ
ସନ୍ତ ମାନସ ମୋହିବ
ଶରଣ ସୋଦର ଶ୍ରୀଚରଣ ସ୍ମର
ସତେ ତ୍ରିତାପ ଦହିବ । ୧ ।

ଶମ୍ଭୁ ଉରଜା ସଙ୍ଗରେ
ଶଶୀକରେ କରିଙ୍ଗରେ
ସୀତା–ପ୍ରେମବନେ ରାମ–କଣ୍ଠୀରବ
ରତି ରସ ପ୍ରସଙ୍ଗରେ । ୨ ।

—ଶଦ୍ଦେଚଉଦ—

## ସୀତା ପ୍ରେମ ତରଙ୍ଗିଣୀ

ସୁଲକ୍ଷଣାଙ୍କ ଇଙ୍ଗିତ
ସିନ୍ଧୁ ତେ ନାନାଦ ଭଙ୍ଗିତ
ଶ୍ରୀହସ୍ତକୁ ଜଡ଼େ  ଧର ମାଳାକାରେ
ବୋଲନ୍ତ ପ୍ରେମ ସଙ୍ଗୀତ । ୩ ।

ସିନ୍ଧୁରେ ଇନ୍ଦୁ ବଦନ
ସହିତ ପଦ୍ମ ସଦନ
ସାଗର ସୁଷମା  ହେବ କ ନପମ୍ବା
ସୁର ଅସୁର ବନ୍ଦନ । ୪ ।

ଶ୍ରୀମୁଖେ ହସି ସରସେ
ଶ୍ୟାମଳ ତନ୍ତୁ ହରଷେ
ସହର୍କି ଭୂଷିଲେ  ସତେ ବରଷିଲେ
ସୁଧା କ ଅଙ୍ଗ ପରଶେ । ୫ ।

ସଖି ନୃହ ତର ତର
ସନ୍ତାପେ କାତର ତର
ସଦା ଗୁଡ଼କାର  ଗୃହ ନିବାସିନୀ
ନୃହଂକ କହ ସତ୍ୱର । ୬ ।

ସ୍ୱର୍ଣ୍ଣ ପାଧିତ ତାପରେ
ସଜାଡ଼ ରଖି ତା ପରେ
ଶିରେ ଅନ୍ୟୋଧନ—  ଘାତ ଘନ ଘନ
ଶଷ୍ପର କ ସନ୍ତାପରେ । ୭ ।

ସତୀ ଏ ବଜ ବାଣୀରେ
ଶମ୍ଭାଜତ ଗୃହାଣୀରେ
ସରଲ ସରଲ  ହାରଲ ହାରଲ
ବୋଲ ଯୋଡ଼ିଲେ ପାଣିରେ । ୮ ।

—ଶହେପନ୍ଦର—

Digitized by srujanika@gmail.com

ସାଜରତ୍ନ ସିଂହାସନ
ସ୍ୱର୍ଣ୍ଣ ଖଚିତ ବସନ
ସଧୀରେ ବିଜୟ କରାଇ ପ୍ରଭୁଙ୍କୁ
ଶ୍ରୀମୁଖ କଲେ ପ୍ରସନ୍ନ । ୯ ।
ସୁଚୀର ବ୍ୟଜନ ଧରି
ସଧୀରେ ଅରୁଣାଧରି
ସେବାରେ ଶ୍ରୀରାମ— ମାନସ ମୋହନ୍ତି
ଧନ୍ୟ ସେହି ବସୁନ୍ଧରୀ । ୧୦ ।
ଶ୍ରୀହରି ସ୍ତୁତି ଲହରେ
ଶୂନ୍ୟପୁରେ ହରେ ହରେ
ସୁରର୍ଷି ନିନାଦ କରୁଛନ୍ତି ସ୍ତବଧ
ବେନି ଶ୍ରବଣ କୁହରେ । ୧୧ ।
ସତେ ବିଶଦ ଶରଦ
ସ୍ୱରୂପେ ବିଜେ ନାରଦ
ଶ୍ୱେତ ଷଠାବେଶ କି ସେ କାଶ—ହାସ
ସର୍ବାଙ୍ଗ ଶୁକ୍ଳ ନୀରଦ । ୧୨ ।
ସ୍ମିତେ ରଘୁକୁଳ ବର
ସେକ୍ଷଣି ଗୃହିଁ ଅମ୍ବର
ସ୍ୱାଗତ ହେ ମୁକ୍ତ- ତତ୍ତ୍ୱ ପ୍ରିୟଦର୍ଶି
ସତେ ଅଯୋଧ୍ୟା ନନ୍ଦର । ୧୩ ।
ଶୂନ୍ୟ ଯେ ଶର ଗତରେ
ସରସେ ବସୁମତୀରେ
ସାକ୍ଷାତ ଲଭନ୍ତେ ପ୍ରଭୁ ପୂଜା କଲେ
ବିଧାନେ ଦେବ ଯତ୍ନରେ । ୧୪ ।

—ଶହେଷୋହଲ—

Digitized by srujanika@gmail.com

ସାଷ୍ଟାଙ୍ଗେ ଯୋଡ଼ଣ କର
ସୂର୍ଯ୍ୟକୁଳ ନିଶାକର
ସଂସାର ପଥରେ          ଦୁର୍ଲ୍ଲଭ ଦର୍ଶନ
ଭକ୍ତେ ଉକ୍ତି କ୍ଷମାକର । ୧୫ ।

ଶ୍ରୀନିବାସ ହେ ବରଦ
ଶ୍ୟାମ କୃପା ବିଶାରଦ
ଶରଣ ବତ୍ସଳ          କ୍ଲେଶ-ଶତଦଳ—
କାନନ-ମତ୍ତ-ଦ୍ୱିରଦ । ୧୬ ।

ସୁରବନ୍ଦ୍ୟ ହେ ବେଦରେ
ସ୍ତୁତ ସଦା ଅଭେଦରେ
ସୁପ୍ରକାଶ ସତ,          ରଜ ତମୋଗୁଣେ
ସଂସାର ସ୍ୱାହ୍ନ ମୋଦରେ । ୧୭ ।

ସୁରଦ୍ୱିପେ ହୋଇ ହ୍ୱୀତ
ସୁମନେ ଯେବେ ଶୋଭିତ
ସର୍ପଈନ ଶେଯ          ପାରୁଶେ ଜଣାନ୍ତି
ସକଳେ ହୋଇ ବିହ୍ୱୀତ । ୧୮ ।

ସ୍ୱକ୍ଷେ ଶୁଣି ସେ ଗୁହାର
ସ୍ମିତେ ଅହେ ମଧୁହାର,
ସହଜରେ ଲୀଳା          କର ଅବଲୀଳା—
କମେ, ଅନନ୍ତ ବିହାରୀ । ୧୯ ।

ସରୋଜାସନେ ସୁରତ
ଶଙ୍ଖ ନାଦେ ବହୁ ରତ
ଶ୍ରୁତ ଜଙ୍ଘରଳ          ଅଭଙ୍ଗ ଯା ଦେଲ୍
ନମୋ ହେ ମହ୍ୟ ମୂରତ । ୨୦ ।

—ଶହେସତର—

Digitized by srujanika@gmail.com

## ସୀତା ପ୍ରେମ ତରଙ୍ଗିଣୀ

ସତତରେ ନମୋନମ
ସିନ୍ଧୁ ମନ୍ଥନ୍ତୁ ଜନମ
ସୁଧା ଦେବହିତେ                କଚ୍ଛପ ସ୍ୱରୂପେ
ଶିବ ମୋ ନତ ଘେନମ । ୨୧ ।
ସୁରେ ପରଶିଲ ସୁଧା
ସେକ୍ଷଣି ହୋଇ ବିଶୁଦ୍ଧା
ସୁମୋହିନୀ ରୂପେ                ବାରଣ ଦେବାରି
ସୁରକ୍ଷା ହେଲା ବସୁଧା । ୨୨ ।
ସୁପଣ୍ଡିତ ଅହବରି
ସାକ୍ଷାତେ ବରାହବର
ସୁଖେ ହିରଣ୍ୟାକ୍ଷ                ବିନାଶନ ଦକ୍ଷ
ଦାୟକ ଅଭୟ ବର । ୨୩ ।
ଶିଶୁ ପ୍ରହ୍ଲାଦ ଆଶରେ
ସ୍ତମ୍ଭୁ ମହା ପ୍ରକାଶରେ
ସିଂହ ତେଜ ଧରି                ବିଦାରିଲ କରି
ପରି ହିରଣ୍ୟ ହାସରେ । ୨୪ ।
ସୁମୋହନ ବାମନରେ
ଶୌରି, ଘେନି ଭୂଦାନରେ
ସର୍ବେକ୍ଷେ ଗୃପିଲ                ବଳୀଷ୍ଟୁ ବଳୀଙ୍କ
ସୁଚ୍ଛେ ଅଧୋଭୁବନରେ । ୨୫ ।
ସୁତୀକ୍ଷ୍ଣ ପଶୁ ଧାରଣ
ସହସ୍ରାର୍ଜୁନ ବିଦାରଣ
ଶ୍ୟାମଳ କୋମଳ                ଏବେ ହୋଇଛ ହେ
ସୂର୍ଯ୍ୟକୁଳର କାରଣ । ୨୬ ।
—ଶହେଅଠର—

Digitized by srujanika@gmail.com

ଶଲ୍ୟଧର ବଲ୍ଲଭଙ୍କ
ସ୍ମର ଲଭ ମୁକତଙ୍କ
ସ୍ଥାବରେ ତୁ ଗୌସ୍ୱ— ଗୁରୁ, ଗୁରୁଦେବ
ଧେନ ମୋର ବନ୍ଧନଙ୍କ । ୨୭ ।
ସଂସାରେ ଯାହା ସୁନ୍ଦର
ସୁଖେ ଛନ୍ତି ତୋ ହୃଦର
ସାଁଓ ଏକ ନେବ ପ୍ରମୋଦେ ଗାଅନ୍ତି
ଜ୍ଞାରତେ ନେବ ପନ୍ଦର । ୨୮ ।
ସର୍ବ ପୁରୁଷାର୍ଥମୟୀ
ଶ୍ରୀମୁକତ ଗଡଦାୟୀ
ସେ ତ ମହାଶକ୍ତି ସୁଚନ୍ତ୍ୟ ମୂରତ
ଶରଣଦା ଗୁଣଗ୍ରାହୀ । ୨୯ ।
ସ୍ୱୟଂ ସର୍ବ ମନୋରଥ
ଶ୍ରୀରାମ ହେ ବିଶ୍ୱନାଥ
ଶ୍ରେୟ ତନ୍ତ୍ରପୁରେ ହେଯ୍ୟକର ଦ୍ୱାରେ
ସୁଯୋଗ୍ୟୁଲ ବମଣ୍ଡିତ । ୩୦ ।
ସୁଖାନନ୍ଦ ପ୍ରବର୍ତ୍ତିକା
ସୁରସ ରସ ବେଦକା
ଶୁଦ୍ଧ ସୁପ୍ରଶସ୍ତ ମଦ ବବର୍ଦ୍ଧିନୀ
ସୀତା ଙ୍କ ଗିର ନନ୍ଦକା । ୩୧ ।
ସ୍ୱରୂପ ହିପୁର ଶୋହା
ସତେ ସୁରଜିତ ଅହା
ଶ୍ରୀରାମ ଙ୍କ ଦିବ୍ୟ ରୂପ ମହାଦେବ
ସ୍ମରଣ ମୁଁ କଲ ଯାହା । ୩୨ ।
—ଶହେଡ଼ଡ଼େଇ—

Digitized by srujanika@gmail.com

ଶରଣାଗତ ପାଳକ
ସତେ ମଣିଲି ବାଳକ
ସାରବ କି ମୋର          ବିଜ୍ଞାନ ବିବେକ
ସୁରୁଚିର ମାୟା—ଚେଳକ ।୩୩।

ସତ୍ୟ ସତ୍ୟ ମହାମତେ
ସଂସାରି ଯା ବୋଲି ମତେ
ଶୁଣିଛି ମୁଁ ଅଦ୍ଧା—          ଭୂତ ବେଦବାଦୀ
ବୋଲିଛନ୍ତି ଶ୍ରୁତି ମତେ ।୩୪।

ସର୍ବ ବ୍ୟାପକ ଭାବରେ
ସଂପୂର୍ଣ୍ଣରୂପେ ଭବରେ
ଶରୀର ଯାହାର          ପୂରିଛି ସେ ମାୟା
ପ୍ରକାଶେ କି ପ୍ରଭାବରେ ।୩୫।

ସର୍ନିକଟେ ସେହି ମାୟା
ଶ୍ରୀରାମ ହେ ତୁମ୍ଭ ଜାୟା
ସ୍ୱରୂପ ନିର୍ଗୁଣ          ପ୍ରକାଶେ ସୃଜନ
ସାଧୁଜନେ କରେ ବାୟା ।୩୬।

ଶରୀର ଜିତ ମଦନ
ସଂସାର ମହା ସଦନ
ଦୂରୁହଣୀ ସୀତା          ତୁ ପରମ ପିତା
ମୋତେ କି ବୋଲୁ ବଦନ ।୩୭।

ସ୍ୱୟଂ ନମୋ ନାରାୟଣ
ଶୁଦ୍ଧଜ୍ଞାନ ପରାୟଣ
ସୀତାଟି ତୁମ୍ଭର          ରଘୁକୁଳ ବର
ସିନ୍ଧୁଜା ଏହି ପ୍ରମାଣ ।୩୮।

—ଶହେକୋଡ଼ିଏ—

Digitized by srujanika@gmail.com

# ସୀତା ପ୍ରେମ ତରଙ୍ଗିଣୀ

ସୁପ୍ରକାଶ ଜଗତରେ
ସତେ ଏ ଲୋକ ହୃତରେ
ସୂର୍ଯ୍ୟ ରୂପେ ତେଜ          ଦାନେ ଦେବରାଜ
ସୀତା ପ୍ରଭୁ ସଙ୍ଗତରେ । ୩୯ ।
ଶଶଧର ରୂପଂଧର
ସକଳ ଲୋକ ଉଦ୍ଧର
ସୁରତ ବିଭୋଳେ          ସତତରେ କୋଳେ
ସୀତା–ରୋହିଣୀ କ ଧର । ୪୦ ।
ଶର୍ବ ତୁମ୍ଭେ ଚନ୍ଦ୍ରଧାର
ଶର୍ବାଣୀ ସୀତା ସୁନ୍ଦରୀ
ସ୍ୱାହା ଏ ଜଗତୀ          ସୀତା, ରଘୁପତି
ଅନଳ ଏ ବସୁନ୍ଧରୀ । ୪୧ ।
ସାକ୍ଷାତରେ ମହାକାଳ
ସ୍ୱରୂପୀ ହେ ରଘୁବାଳ
ସଞ୍ଜୀବନୀ ସୀତା          ନିତ୍ୟ ପ୍ରକାଶିତା
ଜଣା ଅଛୁ କାଳ କାଳ । ୪୨ ।
ସ୍ୱର୍ଲୋକବାସିନୀ ଶକ୍ତି
ସୀତା ସ୍ୱୟଂ ମୂର୍ତ୍ତିମତୀ
ଶୁଦ୍ଧ ସନାତନ          ନିତ୍ୟ ନିରଞ୍ଜନ
ଶ୍ରୀହରି ହେ ରଘୁପତି । ୪୩ ।
ସାବିତ୍ରୀ ଶକ୍ତି ମୋହନ
ସୁତ ତୁମ୍ଭର ବଦନ
ସୁତର ମୁଁ ସୁତ          ମୋଠାରେ କହିଁତ
ସୁଦୟା ନାହିଁ କ ମନ । ୪୪ ।

—ଶହେଏକୋଇଶି—

Digitized by srujanika@gmail.com

ଶୁଣି ସେଷଣି ହସିଲେ
ସୀତେଶ ମନେ ଭାଷିଲେ
ଶିବ ଲାଗି ଶକ୍ତି ଦାସ ଲାଗି ପ୍ରଭୁ
ବାଣୀ ସୁଧା ବରଷିଲେ । ୪୫ ।

ସତ୍ୟସନ୍ଧ ହେତୁକର
ସରବେ ତୁମ୍ଭ କଙ୍କର
ଶୁଭେ ପଣରକ୍ଷା— ସାଧନକୁ ଏକା
ଅଶାନ୍ତି ହେ ନିର୍ଲେଜର । ୪୬ ।

ସ୍ମରଣ କରାଇ ଏହା
ଶୁନ୍ୟେ ଗଲେ ଶୁଦ୍ଧଦେହା
ସୁର ସେନାପତି— ବାହନ ଗ୍ରାନ୍ତିକ
ସ୍ମରେ ସୀତା ରଘୁନାହା । ୪୭ ।

—ଶଦ୍ଧେବାଇଣୀ—

Digitized by srujanika@gmail.com

# ସର୍ଗ ବାର

ରାଗ–କଲ୍ୟାଣ ଅହ୍ନାସ୍ୱ

## —ବସନ୍ତ-ବିହାର—

ସଙ୍ଗୀତ ନିପୁଣା ଇଙ୍ଗିତରେ ଅନା
ମୃଦୁ ଭଙ୍ଗିମା ଅଙ୍ଗୀକାରେ
ସମାଗତ ସାଥ— କ୍ଲାନ୍ତ ଦେହା ସତ
•ସୁମନ କାଳ ଏ ସଂସାରେ
ସଜନି
ସ୍ୱଚ୍ଛ ଚୂତାଙ୍କୁର ଶାୟକ
ସୁମନେ ସୁମନ— ରଥେ ଆରୋହଣ
ସଗଣେ ସମ୍ରାଟ ପ୍ରାୟକ । ୧ ।
କିଶୋର ଅଙ୍ଗି, ତ୍ରିଗୁଣ ଯୋଗ ଭଙ୍ଗୀ
ଅତନୁ ସ୍ୱାଗତ ପାଇଁକି
ସୁରଭି ସୁମନେ ଭ୍ରମର ଗୁଞ୍ଜନେ
ମଙ୍ଗଳ ସଙ୍ଗୀତ ଗାଇକି ?
ସଜନି
ସତେ କରେ ସମ୍ଭାଷଣରେ
ଶାଖା ବଲ୍ଲରୀର ସଞ୍ଚାଳ ମୃଦୁଳ
ଏ ମଳୟ ସମୀରଣରେ । ୨ ।
ସୁନିର୍ମଳ ସର ଅଦରଣ ବର
ଶ୍ୟାମ–କଣଳସ୍ଥ ଶାଟୀକି
ସଖି ସଙ୍ଗତରେ ଅବର ଅଙ୍ଗରେ
ସୁସମ ସୁମନ ଧଟୀକି
—ଶଡ୍ୱେଡେଇଣି—

Digitized by srujanika@gmail.com

ଗୀତା ପ୍ରେମ ତରଙ୍ଗିଣୀ

ସଜନି
ସୂର୍ଯ୍ୟମୁଖୀ କର ଅଲଟ
ସ୍ୱାଗତ ସଙ୍ଗୀତ ପ୍ରକୃତ ଘୋଷିତ
କଳରବେ କରେ ପ୍ରକଟ । ୩ ।
ଶୁଭାଗମ ଦେଖି ଅରେ ଶଶିମୁଖି,
ସାର୍ବଭୌମ ପର ଏହୁ ତ
ଶଙ୍ଖ ସେ ମଲ୍ଲିକା— କୋରକେ ମିଳନ୍ତ
ଅନ୍ଧ ହୋଇ ମୁଖେ ନାହାନ୍ତ
ସଜନି
ସୁଷମା–ପସରା ଉଠାଇ
ସତେ କେତେ ଗୀତ ଗାଏ ପରଭୃତ
ସୁରତ–ସଂପଦ ଗୋଟାଇ । ୪ ।
ସନମତ ଏତେ ମାଗୁଛୁ ପୁରନ୍ଧ୍ରେ
ସୁରମ୍ୟ ଅଗ୍ରିମ ବଢ଼ାରେ
ସୁରତ ବସୁଲା ଅରେ ଗଳାମାଳା
ସୁଖେ ବଢ଼େ କର ବାହାରେ
ସଜନି
ସତ ନ ମଣୁ କି ବାଣୀକି
ସୁମନ ଅଳର ଅଳି ସୁମନର
ସଦା ଜଣା ଏହୁ ଅଣୀକି । ୫ ।
ଶ୍ରୀସ୍ତ୍ରୁତି ଭଜନ ନକର ବଚନ
ଶ୍ରୀମୁଖ ପୋଡିଲେ ଡଳକୁ
ଶ୍ୟାମଳ କୋମଳ— ଶ୍ରୀଅଙ୍ଗ କେବଳ
ସୀତ୍କାର ଜାଣି ବେଳକୁ
—ଶହେଚଉଶି—

Digitized by srujanika@gmail.com

ସୀତା ପ୍ରେମ ତରଙ୍ଗିଣୀ

ସତସେ

ସନ୍ତୁ ସଙ୍ଗେ ବକେ ସଧୀର
ସତେ ଏ ଉପମା                    ମୋହିନୀ ପଟନ୍ତି କି
ଗତ ଅଙ୍ଗ ନବ ମୁଦର । ୬ ।
ସୁବର୍ଣ୍ଣ ଖଟତ                    ମକର ମଣ୍ଡପେ
ସୁତନୁ ସଙ୍ଗତେ ଶ୍ରୀରାମ
ସବଧିରେ କକେ                    ସୁମନସ କୋପେ
ସାକ୍ଷାତ ମୂର୍ତ୍ତି କୋଟି କାମ

ସତେ କି

ଶାନ୍ତି ପାଶେ ପ୍ରୀତି ସୁହାଣୀ
ସନାତନ ମନ୍ତ୍ର                    ପାଶେ କବ୍ୟା ସିଦ୍ଧି
ସହଜେ ନୀଷ୍ଟ ସ୍ୱରୂପିଣୀ । ୭ ।
ଶ୍ରୀକର ଯୁଗଳ                    ଯୋଡ଼ି ପ୍ରେମଭର
ସ୍ମିତ ମୁଖେ ପ୍ରଭୁ ଭଷନ୍ତି
ସୃଷ୍ଟି ଯାକ ସାର                    ଉପମା ଏକକ
ସାବନୀ ପତ କରନ୍ତି

ସଜନ

ସୀତେ କଲ୍ପଲତେ ତୋ ଲଗି
ସେମାନେ ସଂସାରେ                    ଶୋଭ୍ର ପ୍ରଶଂସାରେ
ସାରେ ଗଣିତ ସଉଭାଗୀ । ୮ ।
ସ୍ୱର ମତେ ସନ୍ତ                    ମହା ତୀର୍ଥମୟୀ
ସରସ୍ୱତୀ ରସ ଦାୟିନୀ
ସତରେ ବାରେ                    ଦତ୍ତୁଦା କଳ୍ପନାରେ
ସଂକଳ୍ପ ପୁରିତ କାରଣୀ

—ଶବ୍ଦେପଚାଶି—

Digitized by srujanika@gmail.com

ସଜନି
ସୁଚନ ଉତ୍ପଳାକ୍ଷୀ ଧନୀ
ସତେ ଚନ୍ଦ୍ରଭାଗା— ଲଭ ସୁଶୋଭିନୀ
ଶୁଚି କାଳନ୍ଦୀ କୃଷ୍ଣବେଣୀ । ୯ ।
ଶିବ ମୋହନାରେ ଏବେ ଅନା ଅନା
ତୋ ପରି ହେଲଣି ବନାନୀ
ସୁକାନ୍ତ ଝଂଟକ ନୟନ ଅଂଟକ
କେତକୀ ବାଞ୍ଛା ବରଦାନୀ
ସଜନି
ଶିସ୍ପଷ୍ଟ କୋମଳ ତନୁଟି
ଶ୍ରୀମୁଖ କମଳ ନେତ୍ର ନୀଳୋତ୍ପଳ
ହରି ନିଏ ପଞ୍ଚମନ୍ତୁଟି । ୧୦ ।
ଶ୍ରୀଚରଣେ ତୋର ଜୀବେଶ୍ୱର, ମୋର.
ଶରଣ ଏ ସ୍ଥଳ କମଳ
ସତେ କି ଅଧର ପ୍ରବାଳ, ଏ କର—
କୋକନଦ ପରି ମଞ୍ଜୁଳ
ସଜନି
ମୁଗ୍ଧ ଚିବୁକ ତୁଳଟି
ସମୀରଣେ ହଲି ଦଶୁଣ୍ଡ କପରି
ଅଦୂରେ ଏ ମୁନି ଫୁଲଟି । ୧୧ ।
ସୁମନ ସ୍ତବକ ଜାଣରେ ଯାବକ—
ଶୋଭନା, ତୁଙ୍ଗ-ପୟୋଧର
ସହଜେ ଉପମା . ମଧୁକ-ସୁଷମା
ଶୋଭନୀ ତୋ ଗଣ୍ଡ ଯୁଗଳ



Digitized by srujanika@gmail.com

ସଜନି
ସୁକେଶ ତମାଲ ଅବଳୀ
ସୁରେଖ ନଖ ପତ୍ରକ ଦେଖ ଦେଖ
ନଅଲ ତନ୍ତୁ ଦଶେ ଝଲ । ୧୨ ।
ଶ୍ରବଣ ସୁଷମ ପାଟଳ କୁସୁମ
ଦନ୍ତ କ କୁନ୍ଦ ସୁମନସ
ଶୁକ ଚଞ୍ଚୁ ନାସା ତୋର ମୃଦୁଭାଷା
ପିକ ପଞ୍ଚମ କ ସରସ
ସଜନି
ସତେ ପୂର୍ଣ୍ଣ କାମ କରବୁ
ଶ୍ରୀକର ଚମ୍ପକ— ଦାମ ମୋ ଗଳାରେ
ମଣ୍ଡି ସ୍ମର ତାପ ହରବୁ । ୧୩ ।
ସୁ ତରଜା ନାସ୍ୱ— ରଜା ଜନକଜା
ଭଣିଲେ ଶୁଣି ଏ ବାଣୀକ
ସର୍ବୋଜନୀ ସୁତ କଲେ ଏକବିତ
ସବ ଲୋକ ଶିସ୍ୱଠାଣୀକ
ସତେ ତ
ସୁବର୍ତ୍ତୁର ହେଜ ମାନସେ
ଶଚୀ ଐରାବତ ବାସବ ଜୟନ୍ତ
ନିଦବ ଏ ରମ୍ଭା ପରଶେ । ୧୪ ।

---

୧୪—(ଶ୍ଳେଷ) ଶଚୀ-ଇନ୍ଦ୍ରପତ୍ନୀ; ଶତମୂଳୀ; ଐରାବତ-ଇନ୍ଦ୍ରଗଜ; ନାରଙ୍ଗ; ବାସବ-ଇନ୍ଦ୍ର; କୋରୁଅଁ ଗଛ । ଜୟନ୍ତ-ଇନ୍ଦ୍ରପୁତ୍ର; ଜୟନ୍ତୀ ଗଛ; ରମ୍ଭା-ଅପ୍ସରା ବିଶେଷ; କଦଳୀବୃକ୍ଷ ।

—ଶବ୍ଦେସଂତରଙ୍ଗି—

Digitized by srujanika@gmail.com

ସଦା କମଳା — ବିମଳାର ବିଳାସ
ଦେଖ ଏ କରୁଣା କର ହେ
ଶୁଣ ସାବଧାନ — ହେ ଗୁଣ ନିଧାନ
ଛବି ଏ ବୈକୁଣ୍ଠ ପୁର ହେ
ସତେ ତ
ଶିବା ରୁଦ୍ରାକ୍ଷ ସଙ୍ଗତରେ
ସ୍କନ୍ଦ ମହାକାଳ — ନନ୍ଦୀ ବୃଷ ମେଳ
ଧ୍ରୁବ କୈଳାସ–ଶୋଭିତରେ । ୧୫ ।
ସନ୍ଧୁ ବଳ ଛବି — ପାର ଅନୁଭବି
ବର କୁଣ୍ଡଳୀ ମଣ୍ଡିତ ଯେ
ସରସରେ ଅନା — ନାଗେଶ୍ୱର ଫଣା
ବଳି ଅଛି ଅକଳିତ ଯେ
ସତେ ତ
ସୋମ ସୂର୍ଯ୍ୟ ସୁମନ୍ଦାର ଯେ
ସୁଷମେ ତମାଳ — ବ ପ୍ରଭାହୁଁ ତୁଳ
ଅହା କିବା ଗ୍ରହ ପୁର ଯେ । ୧୬ ।

---

୧୫—(ଶ୍ଳେଷ) କମଳା–ଲକ୍ଷ୍ମୀ, କମଳା ଗଛ; ବିମଳା–ବିମଳା ଠାକୁରାଣୀ; ଚର୍ମକଷା; କରୁଣାକର–ଭଗବାନ୍; କରୁଣାଫଳର ଖଣି ଅର୍ଥାତ୍ କରୁଣା ନୂଆପୂର୍ଣ୍ଣ; ବୈକୁଣ୍ଠପୁର–ବସ୍ତୁ ନଗରୀ; ମନ୍ଦିର ବୈକୁଣ୍ଠ(ଧ୍ୱନ୍ୟର୍ଥ)ପୁରୀ ଦେଉଳ; ଶିବା–ପାର୍ବତୀ, ହରଡ଼ା, ରୁଦ୍ରାକ୍ଷ–ମହାଦେବ; ରୁଦ୍ରାକ୍ଷଗଛ; ସ୍କନ୍ଦ–କାର୍ତ୍ତିକେୟ, ଅଶ୍ୱଗନ୍ଧା; ମହାକାଳ–ରୁଦ୍ରଗଣ ବିଶେଷ; ଲତା ବିଶେଷ; ନନ୍ଦୀ–ଶିବଙ୍କ ଦ୍ୱାରୀ; ତମ୍ବିରଗଛ; ଧଅଗଛ; ବୃଷ–ବୃଷଭ, ବାସଙ୍ଗ ।

୧୬—(ଶ୍ଳେଷ) ବଳସନ୍ଧୁ–ପାତାଳ; ବରକୁଣ୍ଡଳୀ–ବଡ଼ସାପ; ବର ଓ ଗୁଡ଼ୁଚିଗଛ । ନାଗେଶ୍ୱର–ଶ୍ରେଷ୍ଠସର୍ପ, ଅନନ୍ତ ବାସୁକୀ; ବୃକ୍ଷ ବିଶେଷ;

—ଶହେଅଠେଇଶି—

Digitized by srujanika@gmail.com

ଶୁକବାକ୍ୟ ବୋଧି— ବାରେ ହୃଦନଧି
ମୁନି କଦମ୍ବ ଶୋଭନେ ଯେ
ଶୁଙ୍କ ପ୍ରେମ ଭକ୍ତି— ବଖାଣନ୍ତି ସତେ
ଋଷିଏ ନୈମିଷାରଣ୍ୟେ ଯେ
ସତେ ତ
ସିନ୍ଧୁବାର ମଧଗତେ ଯେ
ସୁସୀତା ବରଙ୍ଗୀ ବରୁଣରେ ସ୍ନେହୀ
ରତ୍ନାକର ପର ପ୍ରତେ ଯେ । ୧୭ ।
ଶୁଳୀପ୍ରିୟ ଧର ଏ ଅଳକା ପୁରୀ
ସ୍ଥିତେ ଶ୍ୟାମଚନ୍ଦ୍ର କହନ୍ତି
ସର୍ବ ସୁଲକ୍ଷଣୀ ବଙ୍କିମ ଈକ୍ଷଣୀ
ପଣ୍ଡିତାମଣୀ ରସବତୀ
ସତେ କି
ଶୂନ୍ୟ ମର୍ତ୍ତ୍ୟପୁର ଶୋହାରେ
ସଙ୍ଗୀତ ପ୍ରବୀଣେ ଏ ରମ୍ୟ କାନନେ
କେତକୀ କୁସୁମ ଦେହାରେ । ୧୮ ।

---

ହାତୀ; ବଳୀ-ଅସୁରରାଜ, ବେତଗଛ;ଅକଳଙ୍କ-ବହୁତ; ସୋମସୂର୍ଯ୍ୟ-ଚନ୍ଦ୍ର, ସୂର୍ଯ୍ୟ; ସୋମଲତା; ଅରଖଗଛ, ସୁମନ୍ଦାର-ଶଙ୍ଖ, ମଙ୍ଗଳ; ଭଲ ମନ୍ଦାର ଗଛ; ତମାଳ-ବୃକ୍ଷ ବିଶେଷ; ତମ-ଅନ୍ଧକାର; ଅଳ-କେଉ ବିପ୍ରଞ୍ଚ-ବିଶେଷ ତେଜ ବରିଷ୍ଠ; ଶୁକ; ପକ୍ଷୀମାନଙ୍କ କାନ୍ତ; ଗ୍ରହପୁର-ଆକାଶ ।

୧୭—(ଶ୍ଳେଷ)ଶୁକବାକ୍ୟ-ଶୁଆର ଶବ୍ଦ; ଶୁକ ମୁନିଙ୍କ କଥା;ବୋଧି-ବାରେ-ସମଝାଇବାରେ; ଓଡ଼ଗଛ ସମୁଦ୍ରରେ; ମୁନି-ଅଗସ୍ତି, ଅଗସ୍ତିଗଛ; କଦମ୍ବ-ସମୁହ; କଦମ୍ବଗଛ; ସିନ୍ଧୁବାର-ବେଗୁନିଆଁ; ସମୁଦ୍ର ପାଣି;



Digitized by srujanika@gmail.com

ସୁରରାଜ ନୀଳ— ନୀଳ କଳେବର
ଅଖିଳ ଜଗତ ବନ୍ଦନ
ଶ୍ରୀମନ୍ତ ସାମନ୍ତ— ଲକ୍ଷଣ ଶୋଭିତ
ମୋ ହୃଦୟ ହରିଚନ୍ଦନ
ସନ୍ତତ
ସନ୍ତାପ ବିନାଶୀ ନନ୍ଦନ
ଶକ୍ତି ଯାର ଅତି ଉତ୍କୃଷ୍ଟ ଧରଣୀ
ପତିତପାବନ ଚେତନ । ୧୯ ।
ସାବଧାନ ହବ୍ୟ ଅବଧାନ କର
ଉପବନ ମୃଦୁ ମାଧୁରୀ
ସତେ ସୁଷମା ସମ୍ଭାରେ ପରିପୂର୍ଣ୍ଣ
ଭୂପତି ନିବାସ ନଗରୀ
ସରସେ
ସଦା ଲୀଳାକର ନଗରେ
ଶୃଙ୍ଗ ଯୋଗେ ତୁଙ୍ଗ ଦେଖ ଏ ଉତ୍ତୁଙ୍ଗ
ଅଦୂରେ ବିଶାଳ ନଗରେ । ୨୦ ।
ସତ୍ୟ ସଦନ ଅହେ ଜୀବଧନ
ସୁଶୀଳା ସହଚରୀ ମେଳ
ଶତ ଶତ କଣ୍ଠୁ— କଳ ନିସ୍ୱନ
ସୁନାରୀ ଗଣ କୋଳାହଳ ।

---

ସୁରାତା-ଲକ୍ଷ୍ମୀ; ଶ୍ୱେତଚ୍ଛତ୍ର; ବର୍ହୀ-ମୟୂର, ତୃଣଘାସ; ବାଡ଼ବାଗ୍ନି ।
ବରୁଣ-ଜଳଦେବତା-ବରୁଣଗଛ । ରତ୍ନାକର-ସମୁଦ୍ର ।

—ଶତେହତରଣି—

Digitized by srujanika@gmail.com

ଶୁକ ବ—

ସଙ୍ଗୀତ ଶ୍ରବଣରେ ଶୁଣ
ସୋହାଗରେ ମେଳ          ନାଗେଶ୍ୱର କୁଳ
ରାଜଭବନ ପର ଗୁଣ । ୨୧ ।
ଶୁଭ ବନ୍ଧ ଦେଖ          ବର କନ୍ୟକାର
ବର କାଢ଼ଫଳ ସହିତ
ସୁବାସ ଜଡ଼ିତ          ଶତଛିନ୍ନ ବ୍ରାତ
ଅଳି ଗୁଞ୍ଜନେ ଆନନ୍ଦିତ

ସଚେ କ

ସୁହାସୀ ଅନନ ବାଦନ—
ସ୍ୱନେ ଏହି ଶୁଭ          ଉତ୍ସବ ମଙ୍ଗଳ
ବ୍ୟାପି ଯାଏ ଦିଗ ଦିଗନ୍ତ । ୨୨ ।
ସୁନାଗ୍ନି ଧବ          ବନ୍ଧ ଦେଖ ରାଘବ
ନବରସିକ ଚୂଡ଼ାମଣି
ସୁଶୀଳ ସଙ୍ଗେ          ଶୋଭିତ ବର ଶାଖା
ମାନସ ନେଉଅଛୁ କିଣି

---

୨୧—(ଶ୍ଳେଷ) ସଉଧ ସଦନ-କୋଠାଘର, ଅଟ୍ଟାଳିକା, ଋଷି ଆଶ୍ରମ ସୁଶୀଳା ସଦ୍‌ଚରିତ୍ର-ଉତ୍ତମ ଆଚରଣ ବଶିଷ୍ଠା ସର୍ଜୀ; ବଡ଼ ବଡ଼ ପଥର ଓ ଝଣ୍ଟି ବୃକ୍ଷ (ଦାସକେରେଣ୍ଟା) କଞ୍ଚୁକିନ-ପ୍ରହରୀ, ସର୍ପ; ସୁନାଗୀଗଣ-ସୁନାଗୀ ବୃକ୍ଷସବୁ, କୁଳୀନା ସ୍ତ୍ରୀ ବର୍ଗ; କୋଳାହଳ-ଶବ୍ଦ; ଏଠାରେ ଝିଙ୍କାରି ଶବ୍ଦ; ଶୁକବ-ଶୁଆପକ୍ଷୀ, ଉତ୍ତମ କବି; ନାଗେଶ୍ୱର କୁଳ-ନାଗେଶ୍ୱର ଗଛସବୁ; ଶ୍ରେଷ୍ଠ ହସ୍ତୀ ସମୂହ ।

୨୨—(ଶ୍ଳେଷ) ବରକନ୍ୟକାର ବନ୍ଧ-ବର କନ୍ୟାର ବବାନ୍ଧ; ବରଗଛ, କବଅର ଗଛର ଶୋଭା; ବର କାଢ଼ଫଳ-ବରକାଢ଼ିଙ୍କ କାର୍ଯ୍ୟ;

—ଶଦେଏକତରଣି—

Digitized by srujanika@gmail.com

ସତେ କି
ସମୀର ମରମର ସ୍ୱନେ
ସଙ୍ଗୀତେ ନବ — ଜାମାତାଙ୍କୁ ଇଙ୍ଗିତ—
ବଚନ କହେ ଭଙ୍ଗେ ଭଙ୍ଗେ । ୨୩ ।
ଶୋଭି ଗୃମସ୍ୱାଏ — ତସ୍ୱଟକୁ ବେଢ଼ି
ଗୀତ ପ୍ରସ୍ତବକୁ ବିସ୍ତାରି
ସଂଗୃର ଖଦ୍ୟାର — ତାଳବୃନ୍ତ ମାନ
ଅଛନ୍ତି କବା ଅନୁସରି
ସତେ କି
ସୁମନସେ ବେଢ଼ି ଅଛନ୍ତି
ସେ ନଗରେ ଜାତ — ପଦ୍ମିନୀ ସଦୃଶ
ଏ ନଗରେ ସେହି ବସନ୍ତି । ୨୪ ।
ସାମନ୍ତ ବ୍ରତତୀ — ନତ ହୋଇଛନ୍ତି
ଗଣିକା ସୁମନା ବାସେ ଯେ
ଦଗଣେ ରସାଳ — ବିଟପୀ ଅଛନ୍ତି
ବେଶକ ମଣିମା ଭାଟେ ଯେ

---

ଜଳ ଜାଇଫଳ; ସୁବାସ-ସୁଗନ୍ଧ; ଲଳନ୍ତୀଗା; ଶତ୍ତସ୍ୱରୁବ୍ରାତନ୍ତୁ-ଅନେକ ସ୍ତ୍ରୀ; ମଲ୍ଲି ଫୁଲ ସବୁ; ଅଳି-ଭ୍ରମର; ଅଳି କରିବା;ଅନନ ବାଦନ-ହୁଲହୁଳି ।

୨୩—(ଶ୍ଳେଷ) ଧବ-ଧଅଗଛ, ସ୍ୱାମୀ; ଦୁଶାଳ-ଉତ୍ତମ ଶାଳଅଗଛ । ଉତ୍ତମ ଶାଳକ; ବଢ଼ଶାଖା-ବରଗଛ ଡାଳ; ବରର ସ୍ନେହୀ ।

୨୪—(ଶ୍ଳେଷ) ଗୃମସ୍ୱାଏ-ଚମସ୍ତ ମୃଗମାନେ, ଗୁଆଗଛ ସବୁ; ଗୃମରଧାରକଗଣ; ତସ୍ୱଟ-ବୃକ୍ଷ ବିଶେଷ; ତ-ଅବ୍ୟୟ କିଷ୍ଟ୍ୟାର୍ଥକ; ସଟ-ସ୍ତ୍ରୀ; ଗୀତ ପ୍ରସ୍ତବ-ସବୁଦଳର ପ୍ରକୃଷ୍ଟ ଭାବ; ନିପୂମର ଶୃଙ୍ଖଳା;

—ଗହେବଡଣ୍ଣୀ—

Digitized by srujanika@gmail.com

ସଞ୍ଚାର
ସତ ମାଗଧ ସୂତ ଗୀତ
ସେଥି ବୀରବରେ ଏଥି ବ ରବରେ
ବିବୁଦ୍ଧ ହୋଇଛନ୍ତି ଏକତ୍ର । ୨୫ ।
ସହୃ ବଦାନ୍ୟମଣି ରୁ ଶିରୋମଣି
ପଣ୍ଡିତା ଗଣ ଅଗ୍ରଗାର
ସୁକଣ୍ଠ କ କଣ୍ଠ ବଳୀ ବଳୀ ବଳୀ
ବଳିଛନ୍ତି ତାର ଶୋଭାସାର
ସଜନି
ସମର୍ପ ଜୀମୂତବାହନ—
ସଂପତ୍ତି କ ହେଲେ ବସାଇଣ କୋଳେ
ଦିଅ ସୁତନ୍ତୁ ତନୁ ଦାନ । ୨୬ ।

---

ଖଂଦର-ଖଇରଗଛ, ଖଦର; ତାଲବୃନ୍ତ-ତାଳଗଛ, ବିଚଣା; ସୁମନସେ-ଫୁଲଗଛ, ପଣ୍ଡିତମାନେ; ଜାତି ପଦ୍ମିନୀ-ପଦ୍ମିନୀ ଜାତୀୟା ସ୍ତ୍ରୀ; ଯାଇଫୁଲ, ପଦ୍ମଲତା ।

୨୫—(ଶ୍ଳେଷ) ବ୍ରତତୀ-ଲତା, ସମୁଦ୍ର; ଗଣିକା-ବେଶ୍ୟା, କଇଣୀ, ନୃଇ; ସୁମନା-ସ୍ତ୍ରୀ, ପଣ୍ଡିତ । ବାସେ-ଘରେ, ବାସନାରେ, ଲୁଗାଦ୍ୱାରା; ରସାଲ-ଅମ୍ବଗଛ, ରସିକ; ଶଠର୍ପା-ବୃକ୍ଷ, ବେଶ୍ୟା । ବେତକ-ବେତଗଛ, ପ୍ରତିହାରୀ; ମାଗଧ-ଭାଟ, ଜୀରାଗଛ; ବୀରବରେ-ବୀର ଶ୍ରେଷ୍ଠମାନେ; ବେଣା ଚେର; ବି-ରବରେ-ପକ୍ଷୀ ଶବ୍ଦରେ । ବିବୁଦ୍ଧ-ମୁଥା, ଅବତାର ବିଶେଷ;

୨୬—(ଶ୍ଳୋକ) ବଳୀବଳୀ-ବଳବନ୍ତ ବଳୀ; ବଳୀ-ବିବଳୀ; ଜୀମୂତବାହାନ-ଇନ୍ଦ୍ର; ଜନୈକଦାତା । ବଳଦାତା କଣ୍ଠଦାତା ଦାତା ଜୀମୂତ ବାହନ-ଇତ୍ୟାଦି, ସୁତନ୍ତୁ-ସୁନ୍ଦରୀ, ତନୁ-ଦେହ, କ୍ଷୁଦ୍ର, ଅଳ୍ପ ।

—ଶବ୍ଦଚେତଶୀ—

Digitized by srujanika@gmail.com

ସରସେ ହରଷେ      ସୀତା ରଘୁପ୍ରୀତ
ବସନ୍ତ ବହାର ଛାନ୍ଦ ଯେ
ଶଶୀ ସମ ଅସ୍ତ—      ଶିଖରୀ ପରଶେ
ସୁଷମା କୌମୁଦୀ ସାନ୍ଦ୍ର ଯେ
ସୁଜନେ
ସ୍ମର ସେହୁ ଦବ୍ୟ ଚରଣ
ଶିଖୀ ପ୍ରଭଣ୍ଡ      ଗ୍ରାନ୍ଥିକ ଭାବର
ଭୂସୁର କୁଳ ଅଭରଣ । ୨୭ ।

---

# ସର୍ଗ ତେର

ରାଗ—ବସନ୍ତ

## —ଗ୍ରୀଷ୍ମ ବର୍ଣ୍ଣନ—

ଶୁଣ ସାଧବ ମାଧବ ଋତୁ ହେଲା ଶେଷ
ସହଜେ ଦୁର୍ଜ୍ଜୟ ଗିର ଗ୍ରୀଷମ ପ୍ରବେଶ । ୧ ।
ସେହଣି ଝିଲ୍ଲୀ ଝଙ୍କାରେ ଯାଉଛୁ ବା କହ
ସହଣୀୟ ନୁହେ ଏ ବିଷମ କାଳ ଅହ । ୨ ।
ସ୍ୱେଦ ଜାତ ଅଙ୍ଗେ ଅଙ୍ଗ ପରଶ ମାତରେ
ଶିଖାବାନ ସୂର୍ଯ୍ୟ ବାଦ ତେଜ ପରସ୍ପରେ । ୩ ।

---

୨୭—ଶିଖୀ ପ୍ରଭଣ୍ଡ—ନୀଳକଣ୍ଠ ।
୧— ମାଧବ ଋତୁ—ବସନ୍ତ ।
୩—ଶିଖାବାନ—ଅଗ୍ନି ।

—ଶବ୍ଦେଚଉଦ୍ଧରଣି—

Digitized by srujanika@gmail.com

## ସୀତା ପ୍ରେମ ତରଙ୍ଗିଣୀ

ସାନୁମାନେ କୃଶାନୁ ଯେ ଅନୁ ଅନ ଦହଣ
ଶର୍ବରୀ ଦିବସେ ଦୀପ୍ତପଞ୍ଚସ୍ତ ସଦୃଶ । ୪ ।
ଶୂନ୍ୟ ପଥରେ ପ୍ରଖର ଅସହ୍ୟ ତରଣି
ସୁପ୍ରକାଶ ମହାତେଜ ତପତ ଧରଣୀ । ୫ ।
ସରଣୀ ଧୂଳି ହୋଇଲା କି ମହା ତପତ
ସତେ ପାନ୍ଥଘାତ ରଣଭୂମି ଅଶ୍ୱବତ । ୬ ।
ସହସ୍ରକର ତା କର ପ୍ରତାପରେ ଅତ
ଶୀତଳତା ନେଲା ବାତ ଜୀବନ୍ତ ସଂପ୍ରତ । ୭ ।
ସହଜେ ମନରଞ୍ଜନ କଲା ଜନଙ୍କର
ଶୀତକର ଚନ୍ଦ୍ରଲେପ ବ୍ୟଜନ ସର୍ମାର । ୮ ।
ସର୍ବେଜବନ୍ଧୁ ବାଦରେ ଜିଣିବା ପାଇଁକି
ଶିଖାବାନ କି ଉଦ୍ୟମ କରିଲା ତହିଁ କି । ୯ ।
ଶତବର୍ଣ୍ଣ ନଳୀ ଗ୍ରନ୍ଥି-ଗୁଳ ଯୁକ୍ତ କରି
ଶବଦରେ ଜଣାଇ କି ଦେଲା ବସୁନ୍ଧରୀ । ୧୦ ।
ସରସବତୀଙ୍କ ଯେଣୁ ଜଳଯନ୍ତ୍ର ପୁରେ
ସୁରସେ ଭ୍ରମନ୍ତି ରଘୁପତ ପ୍ରେମ-ଶିରେ । ୧୧ ।
ଷୋଳ ବେଳ ଲକ୍ଷଣା ହୃଦରେ ସାବଧାନ
ସମାଗତ ମହାଘୋର ଗ୍ରୀଷ୍ମ ଏ ଦିନ । ୧୨ ।
ସୁରଙ୍ଗିନୀରେ କୁରଙ୍ଗ ନୟନ ଚଞ୍ଚଳ
ସାକ୍ଷାତତ ଦଶଇ ଦଣ୍ଡଶ ମୃଗତୃଷ୍ଣା ଜଳ । ୧୩ ।

---

୪—ସାନୁମାନ-ପର୍ବତ; କୃଶାନୁ-ଅଗ୍ନି ।
୮—ଶୀତକର-ଚନ୍ଦ୍ର; ଚନ୍ଦ୍ର-କର୍ପୂର; ବ୍ୟଜନ-ବିଞ୍ଚଣା ।

—ଗ୍ରୀଷ୍ମପଞ୍ଚ ତରଙ୍ଗ—

Digitized by srujanika@gmail.com

ସଙ୍କେତର ହେଲଣି ରସିକ ରସାପତି
ସତତ ମହିଷୀ ଅଲଙ୍ଗନେ ରସବତୀ । ୧୪ ।
ସୁରତସ୍ଥାନ ନାସ୍ତିକା ପର ଜୀବଧନ
ସରତେ ତ ହୋଇଲେଣି ଘନ ରସ ସ୍ଥାନ । ୧୫ ।
ସୁ ପ୍ରବଳ ଦାବାନଳ ଘୋଟିଛୁ ବନାଗ୍ନି
ସଙ୍ଗିରେ ସୁମନା ହୃଦେ କି ବିରହ ଅଗ୍ନି । ୧୬ ।
ସାକ୍ଷାତେ ପ୍ରତାପଶାଳୀ ଭୂପତି ସମାନ
ସତତ କର ପୀଡ଼ାରେ ପଦ୍ମିନୀ-ରମଣ । ୧୭ ।
ଶାର୍ଙ୍ଗୀ ପକ୍ଷାବଳୀ ସ୍ଥାନେ ଦଶନ୍ତ ଏସନ
ସୁରତାନ୍ତ ନବୀନାର ଛବି ଏତ ଧନ । ୧୮ ।
ସତେ ବିପରୀତରତା ରମଣୀ ସଦୃଶ
ସତତ ରସନା ଗୃଳ ମୃଗକୁଳ ଦୃଶ । ୧୯ ।
ଶୋଇଲୁ ଭୁଜଙ୍ଗ ଏବେ ବିଟପୀର ସ୍ଥିର
ସଦାକାଳେ ଏ ତାହାର ସେ ତାହାର ହୋଇ । ୨୦ ।

---

୧୪—(ଶ୍ଳେଷ) ମହିଷୀ-ପାଟରାଣୀ; ମଇଁଷି ପଶୁ ।

୧୫— (ଶ୍ଳେଷ) ସୁରତସ୍ଥାନ ନାସ୍ତିକା-ବୃଦ୍ଧା; ଘନରସ-ଜଳ; ପ୍ରଗାଢ଼ ରତରସ; ଗାଢ଼ ଶୃଙ୍ଗାର ।

୧୭—କରପୀଡ଼ାରେ-ଉପ୍ରକିରଣ ଜନିତ ବାଧାରେ; ଅଧିରକ୍ତ ରାଜକର ବାଧାରେ ।

୧୮—ପକ୍ଷାବଳୀ-ପକ୍ଷ ସମୂହ; ସ୍ତ୍ରୀର ସ୍ତନଲକ୍ଷିତ ନଖକ୍ଷତାଦ ଚିହ୍ନ ।

୧୯—ରସନା-କ୍ଷୁଦ୍ରଘଣ୍ଟି (ରସନା କ୍ଷୁଦ୍ରଘଣ୍ଟିକେ-ଅମର) ଜିଭ; ମୃଗକୁଳ-ପଶୁ ସମୂହ; ମୃଗମାନେ ।

୨୦—ଭୁଜଙ୍ଗ-ସାପ, ବିଟ ପୁରୁଷ; ବିଟପୀ-ବୃକ୍ଷ, ବିଟ ସ୍ତ୍ରୀ ।

—ଶବ୍ଦେହଛତଣି—

Digitized by srujanika@gmail.com

ଶରଣବତ୍ସଳା ବହୁ କୁଟୁମ୍ବୀ ସମାନ
ସୁଖ ତେଜି ଦୁଃଖ ହେଜି ଜଳଚରଗଣ । ୨୧ ।
ସୁରସିକ ଜନଙ୍କୁ ଏ କାଳ ଭୋଗକର
ସୁବାସିତ ହର୍ମ୍ମ୍ୟତଳ ଶୋଭା ଶଶୀ କର । ୨୨ ।
ସୁଲକ୍ଷଣା ମୁଖୋଚ୍ଛ୍ୱାସ ମଧୁ ମାଦକରେ
ଶୁଚିରୁଚେ, ସୁତନ୍ତ୍ରୀ ସଙ୍ଗୀତ ମୋଦ କରେ । ୨୩ ।
ସର୍ବାଙ୍ଗେ ଲେପିତ ଚନ୍ଦ୍ର ଚନ୍ଦ୍ର ମିଶ୍ରିତରେ
ସୁନାସୀରଭୂତଦାୟୀ କଥା ଇଙ୍ଗିତରେ । ୨୪ ।
ସହ ତୁ ଏ କାଳ ପାଇଁ ସ୍ୱଚ୍ଛ ସରୋବର
ଶୋଭା ନେତ୍ର-ମୀନାବର୍ତ୍ତା ହାସ କୁମୁଦର । ୨୫ ।
ଶୈବାଳ ବାଳେ ଗୋ ବାଳେ କଦନ-ପୁଳନ
ସହଜେ ସୁରସ ରସେ ସଦା ପରିପୂର୍ଣ୍ଣ । ୨୬ ।
ସ୍ତନ ଚକ୍ରବାକ ମିଥୁନର କ୍ରୀଡ଼ାରଙ୍ଗ
ସତେ କି ଭ୍ରମର ନାଭି ହୋଇଅଛି ସଙ୍ଗ । ୨୭ ।
ସହରେ ସହ ନପାରି ଗ୍ରୀଷ୍ମ ମହାତାପ
ଶରୀର ବୁଡ଼ାଇଥିବ ଅଙ୍କଣ୍ଠ ଏ ଅପ । ୨୮ ।
ସ୍ୱେଦ ବିନ୍ଦୁ ବିନ୍ଦୁ ଇନ୍ଦୁ ମୁଖେ କି ସୁନ୍ଦର
ସ୍ମଧାରିଶି ଝାଳ କିବା ଦିଏ କଣାକର । ୨୯ ।
ସେ ଚନ୍ଦ୍ର କରଣେ ତନୁ ହୋଇବ ଶୀତଳ
ସହ ମଲ୍ଲୀ-ହାସ-ମାଳାଦିଅ ମୋର ଗଳ । ୩୦ ।

---

୨୭—ଭ୍ରମର-ଜଳାବର୍ତ୍ତିର ତୁଲ୍ୟ; (ଭ୍ରମୋମ୍ବୁ ନିର୍ଗମେ ଭ୍ରାନ୍ତ୍ୟା-ମେଦିନୀ) ।

—ଶତେହସତତରଙ୍ଗି—

Digitized by srujanika@gmail.com

ଶ୍ଳେଷେ ଗୁମ୍ଫୁଛନ୍ତି ଛଳେ ସୀତା ମୃଦୁବାଣୀ
ସାର୍ଥକ ରାଘବ ନାମ ତବ ରଘୁମଣି । ୩୧ ।
ସବୁଶେଷେ ରାମଚନ୍ଦ୍ର ଶୀତଳତା ଗୁଣ
ସରବ ନିଦାଘ ସୁଖେ ଜୀବର ଜୀବନ । ୩୨ ।
ସହ୍ୟରେ ମୁଁ ଦାଶରଥି ସୁରତ-ପ୍ରବୀଣା
ସେବକରେ ନାମ ଲେଖା ଉଚିତ ମୋ ବିନା । ୩୩ ।
ସୁବାସ କୁଞ୍ଜିବ ଅଳିପଣ ମୋର ହେଉ
ସୁମନସ ମାନେ ମାଳ-ବାଳୀ ଯଶ ରହୁ । ୩୪ ।
ଶ୍ରୀଚରଣେ ଯାବକ ରଞ୍ଜନେ ମୁଁ ସେବକ
ସରସ ହୃଦୟା ମୋତେ ମିଳୁ ଏ ମାନବ । ୩୫ ।
ସ୍ମିତେ ଭାଷେ ସତୀ ଦାସୀଠାରେ ଏକା ଛଳ
ସୁମନର ଅଳି ବିନା ଅଳି ସୁମନର । ୩୬ ।
ସବୁଲି ନିଦାଘହାସ ରସ ପରହାସ
ସପ୍ତବିଂଶ ପଦେ ଯେ ଗ୍ରାନ୍ଥିକ ପରିତୋଷ । ୩୭ ।

---

୩୧—ଶ୍ଳେଷେ-ଅଳଙ୍କାରରେ; ଅନେକାର୍ଥ ଶବ୍ଦ ବିନ୍ୟାସରେ । (ଅନେକାର୍ଥ ଶବ୍ଦବିନ୍ୟାସ ଶ୍ଳେଷଃ-ଅର୍ଥାତ୍ ଅନେକାର୍ଥ ଶବ୍ଦ ବିନ୍ୟାସ କରିବାକୁ ଅଳଙ୍କାର ଶାସ୍ତ୍ରରେ ଶ୍ଳେଷ ବୋଲି କହନ୍ତି । )

—ଶତ୍ୱେଅଠତରଣୀ—

Digitized by srujanika@gmail.com

# ସର୍ଗ ଚଉଦ

## ରାଗ—କଲ୍ୟାଣ ଅହାରୀ

## — ବର୍ଷା ବର୍ଣ୍ଣନା

ସହ୍ୱରେ ବବ୍ରେଧା— ଭୂଷ ଅଭ୍ରସରେ
ପ୍ରବେଶ ନବର୍ଷା କାଳ ଯେ
ଶୋଭା ତା କମ୍ବର ଗର୍ସିଛୁ ହର
ଘନାଘନ ପରବଳ ଯେ
ସଜନି
ସହଜେ କାଳିକା ଯେଣୁଟି
ସନ୍ତାପ ବିନାଶେ ମହୀଷର ଚୋଷେ
ପ୍ରମୋଦେ ଛୁଟେ ଜୀବନଟି ।୧।

ତ୍ରିୟୁପତି ପଦ ବନ୍ଦନେ ଚଞ୍ଚଳା
ସଲିଳେ ତା ଜ୍ୟୋତି ଅଭ୍ର ଯେ
ସ୍ନାନ ଅବରତେ ବଜନତ ଯାହା
ଶରତ ଚମକ ପ୍ରଭା ଯେ

---

ଶ୍ରୀରାମଚନ୍ଦ୍ର ବର୍ଷାଋତୁର ଆଗମ ଦେଖି ସୀତାଙ୍କୁ ଲକ୍ଷ୍ୟ କରି-ରେ ସହ ବବ୍ରେଧାଭୂଷ ପ୍ରକାଶ କରି ବର୍ତ୍ତମାନ ବର୍ଷାକାଳ ପ୍ରବେଶ ହେଲା ଦେଖ—

୧—ଶବ୍ଦାର୍ଥ-ଘନାଘନ-ମତ୍ତହସ୍ତୀ; ହର-ସିଂହ କାଳିକା-ଦୁର୍ଗା; ମହୀଷର-ମହିଷାସୁରର; ଜୀବନ-ପ୍ରାଣ ।

ପ୍ରକୃତାର୍ଥ-ଘନାଘନ-ମେଘାଡ଼ମ୍ବର; ହର-ଚନ୍ଦ୍ର, ସୂର୍ଯ୍ୟ । କାଳିକା-ମେଘସମୂହ । ମହୀଷର-ମହୀଷ ପଶୁର । ଜୀବନ-ଜଳ ।

—ଶବ୍ଦଅର୍ଥଗୁଳି—

Digitized by srujanika@gmail.com

ସଜନି
ସତେ ଦ୍ୱିଜେ କେତେ କଷଣ
ଶଶୀମୁଖି ଅରେ          କରକ ପ୍ରହାରେ
ଭର ଦାଏ ଏବେ ପ୍ରମାଣ । ୨ ।
ସୁନ୍ଦରି, ପ୍ଲବଙ୍ଗ          କଲେ ନାନାରଙ୍ଗ
ପ୍ଲବଙ୍ଗେ ହେଲେଣି ବିରସ
ସଦା ମଧୁହାରୀ          ସୁମନା ବିହାରୀ
କାଳିକା କୋଳରେ ଦିନେଶ
ସଜନି
ସଶଙ୍କ ଜଗତ ପ୍ରାଣ ଯେ
ଶଙ୍କା ହୀନ ହୋଇ          ଏବେ ପ୍ରସରଇ
ଭୁବନେ ଜଗତପ୍ରାଣ ଯେ । ୩ ।

---

୨—ବିରୋଧାର୍ଥ-ଶ୍ରିୟାପତିପଦ-ବିଷ୍ଣୁଙ୍କ ପାଦ ପଦ୍ମ; ଚଞ୍ଚଳା-ଲକ୍ଷ୍ମୀ । ସଲୀଳେ-ଚଞ୍ଚଳରେ । ଶ୍ୱାନ-କୁକୁର । ଅବି-ମେଣ୍ଢା; ରତେ-ରତିକ୍ରିୟାରେ; ଶରଭ-ଅଷ୍ଟପାଦୀମୃଗ । ଦ୍ୱିଜେ-ବ୍ରାହ୍ମଣମାନଙ୍କୁ; କରକ ପ୍ରହାର-କମଣ୍ଡଳୁ ମାଡ଼ । ପ୍ରକୃତାର୍ଥ-ଶ୍ରିୟାପତିପଦ-ବିଷ୍ଣୁପଦ-ଆକାଶ (ଲକ୍ଷିତଲକ୍ଷଣା) ଚଞ୍ଚଳା-ବିଜୁଳି; ସଲୀଳେ-ଚଞ୍ଚଳଗତିରେ । ସ୍ୱାନ-ଶବ୍ଦ । ଅବିରତେ-ସର୍ବଦା । ଶରଭ-ଅଷ୍ଟପାଦୀ ମୃଗ; ଦ୍ୱିଜେ-ପକ୍ଷୀମାନଙ୍କୁ । କରକ ପ୍ରହାର-କୁଆପଥର ମାଡ଼ ।

୩—ବିରୋଧାର୍ଥ-ପ୍ଲବଙ୍ଗମାନେ ନାନାରଙ୍ଗେ (ନାନାକ୍ରୀଡ଼ା) କଲେ । ପ୍ଲବଙ୍ଗମାନେ ବିରସ ହେଲେ । ମଧୁହାରୀ-ମଦ୍ୟପ; ସୁମନା-କୁଳାଙ୍ଗନା; କାଳିକା-ଦୁର୍ଗା; ଦିନେଶ-ସୂର୍ଯ୍ୟ । ଜଗତ୍ ପ୍ରାଣ ସଶଙ୍କ ହେଲା । ଶଙ୍କାହୀନ ହୋଇ (ନିର୍ଭୟରେ) ଜଗତ୍ ପ୍ରାଣ ଭୁବନରେ (ପୃଥିବୀରେ) ପ୍ରସରିଲା । (ଶବ୍ଦ ବିରୋଧ ଓ କର୍ମ ବିରୋଧ) ।

—ଶଦ୍ୱେଗୃଳଶି—

Digitized by srujanika@gmail.com

ସୁବେଶ ସାଧବ ବଧୂ ଏହୁ କାଳେ
ମହୃଷ୍ଟ ରସରେ ମାତ ଯେ
ସୁହାସୀ ଗଣିକା ବାଟପ ବନାଶେ
ହସି ଉଠେ ଦବା ରାତ ଯେ
ସଜନି
ଶଇଳଜା ପଦ୍ମ ପଡନେ
ସ୍ନେହେ ବିଷକଣ୍ଠ ଅନନ୍ଦେ ମଗନ
କାହିଁ ଦେଖିଛ କେ ନୟନେ । ୪ ।

ଶୋଭ୍ର ପ୍ରବର ବଢ଼ାଏ ଗନ୍ଧବତୀ
ବରକୋଳେ ଦେଖ କେସନ
ଶୋଭିତରେ ଭାତ ହେଲା ଗନ୍ଧବତୀ
ବରକୋଳେ ମେଣ୍ଟ ମଗନ

---

ପ୍ରକୃତାର୍ଥ–ପ୍ଲବଙ୍ଗ–ବେଙ୍ଗ ଓ ମାଙ୍କଡ଼ । ମଧୁହାରୀ–ଭ୍ରମର; ସୁମନା-ମାଲତୀ (ସୁମନା ପୁଷ୍ପ ମାଲତ୍ୟାଂ ସ୍ତ୍ରୀୟାଂ ନା ଦେବ ଧୀରୟୋଃ–) କାଳିକା-ମେଘମାଳା । ଦନେଶ–ସୂର୍ଯ୍ୟ; ଜଗତ୍ପ୍ରାଣ–ଜଗତ୍ ବାସୀଙ୍କ ଜୀବନ,ପବନ ।

୪—ବଶେଷାର୍ଥ–ସାଧବ ବଧୂ–ବଣିକଙ୍କର ବୋହୂ; ମହୃଷ୍ଟ–ପଶୁ ବଶେଷ; ରସ–ରଢକିୟା; ଗଣିକା–ବେଶ୍ୟା; ବାଟପ–ଜାର; ଶଇଳଜା-ଦୁର୍ଗା ପଦ୍ମ-ବକ୍ତ୍ର; ବିଷକଣ୍ଠ-ମହାଦେବ ।

ପ୍ରକୃତାର୍ଥ–ସୁବେଶ–ସୁନ୍ଦର; ସାଧବ ବଧୂ–ଜଳ ଗୋପକୀଟ; ମହୃଷ୍ଟ-ପଶୁ ବଶେଷ ରସ୍–ଜଳ; ସୁହାସୀ ଗଣିକା–ଛୁଟନ୍ତା ଯୁଇଫୁଲ । ବାଟପ ବନାଶେ–ଏ କାଳରେ ବଶେଷ ଯୁଇଫୁଲ ଫୁଟିବାରୁ ପଦ୍ମମାନେ ଗୁଷ୍ମାବୃତ ହୋଇଯାନ୍ତ । ଏମନ୍ତ ଅଭିପ୍ରାୟ । ଶୈଳଜା–ଶୃଙ୍ଗ; ପଦ୍ମ–ବକ୍ତ୍ର; ବିଷକଣ୍ଠ-ମୟୂର ।

—ଶରଦ୍ଏକବିଂଶ—

Digitized by srujanika@gmail.com

ସଜନ

ସହଜେ ପୁଷ୍କରେ ଉଡୁପ

ଶୋଭବନ ଦଣେ                ପୁଷ୍କରେ ତ ଅଛ

ସୁନ୍ଦର ନଦଣେ ଉଡୁପ । ୫ ।

ସ୍ତନିତ ଚମକେ                ବିଜୁଳି ଝମକେ

ଏକାଳେ ଚନ୍ଦ୍ରହାସ ଶୋଭି

ଶ୍ୟାମଘନ କୋଳେ                ଇନ୍ଦ୍ରଧନୁ ଦୋଳେ

ସେମା ଶୋଭକୁ ପରିଭବି

ସରସେ

ଶ୍ରୀଅଙ୍ଗେ ଜଡ଼ାଇ ଶ୍ରୀରାମ

ସହି ଏ କି କର                ମୁଁ ସିନା କିଂକର

ତୁହି ଯେ ରମଣୀ ଲଲାମ । ୬ ।

ଶୁଣି ଗୁଣଧାମ                ରସେ ଭାଷେ ବାମ—

ନୟନା, ଅଭିରାମ ଭ୍ରମେ

ଶିଖରୀ ଶିଖେ                କଜ୍ଜଳ କାନ୍ତି ଧରି

ଶାର୍ଦ୍ଦୂଳ ସମ ଘନ ଭ୍ରମେ

---

୫—ଶବ୍ଦବୋଧାର୍ଥ-ଗନ୍ଧବତୀ ବର କୋଳରେ ଶୋଭ ପ୍ରବର୍ବଢ଼ାଏ । ଯେଣୁ ଗନ୍ଧବତୀ ବର କୋଳରେ ମଗ୍ନ ହେଣୁ ଶୋଭିତରେ ଖ୍ୟାତ ହୁଏ କି ? (ଅସୁନ୍ଦର ଦଣେ କି)ପୁଷ୍କରେ ଉଡୁପ ଶୋଭ ବନ ଦଣେ ନାହିଁ ।(ଶବ୍ଦ ଶବ୍ଦବୋଧ)

ପ୍ରକୃତାର୍ଥ—ଗନ୍ଧବତୀ--ଉତ୍ତମ ସ୍ତ୍ରୀ, ପୃଥିବୀ, ବରକୋଳେ—ପତି କୋଳରେ;ଶ୍ରେଷ୍ଠ ବକ୍ଷରେ । ପୁଷ୍କରେ-ଅକାଶରେ, ଜଳରେ । ଉଡୁପ-ଚନ୍ଦ୍ର, ନୌକା ବା ଭେଳା ।

୬—ସ୍ତନିତ-ମେଘ ଗର୍ଜନ ।

—ଶବ୍ଦବ୍ୟାଳଗି—

Digitized by srujanika@gmail.com

ସତେ କି
ସାକ୍ଷାତ ବଙ୍କାଳୀ ଦନ୍ତ ଯେ
ସ୍ତନିଂତ ଗର୍ଜନ                    କାଳିକା ନାମେ କି
ହବ ଉପଗତ ସତ ଯେ । ୭ ।
ସହସ୍ର-କିରଣ—                    କୁଳ-ଅବତଂସ
ସ୍ତନ-କଣ୍ଠକୁମ୍ଭ ବଦାର
ସୁତୀକ୍ଷଣ ନଖ—                    ଘାତେ ପଞ୍ଚାନନ
ସେହୁ ଭୟେ ସିନା ଅଦର
ସରସେ
ସୁଦେଶ ଅଶ୍ରେଳ କୋଳକୁ
ଶରଣ ବତ୍ସଳ                    କାରଣ 'ବର ହେ
ଅଶରଣେ ଏତେ ବେଳକୁ । ୮ ।
ଶ୍ମଶାନ ଅନଳ                    ପର କି ପ୍ରବଳ
ଚନ୍ଦ୍ରାମଣି ଦେଖ ଦେଖ ହେ
ସ୍ତମ୍ଭ ହୁଏ କାଷ୍ଠା—                    ବଳୀରେ ବଜୁଳ
ଭଳ ଭଳ ଜଳ ଲକ୍ଷ ହେ
ସତେ କି
ସୁମନା ବରହ୍ରଣୀ ଯେତେ
ସୁମନଶର କି                    ଏକତ୍ରିତ କରି
ଜାଳୁଛନ୍ତି କି ଭଳି ଶରତେ । ୯ ।

---

୭—ହରି-ସିଂହ, ବେଙ୍ଗ, ସାପ ।

୮—ପଞ୍ଚାନନ-ସିଂହ ।

୯—କାଷ୍ଠାବଳୀ-ଦଗମାନେ, ଡାଠସବୁ ।

—ଶତେହେଉସ୍ଥାଳସ୍ତି—

Digitized by srujanika@gmail.com

ଗୀତା ପ୍ରେମ ତରଙ୍ଗିଣୀ

ସମ୍ପ୍ରତେ ଭୃଙ୍ଗନ୍ତ ରସିକାବରଙ୍କ
ନାସିକା ଫୁଲକୁ ଅନାଇଁ
ସହୁ ଏ ଦୁର୍ଦ୍ଦିନେ ଦେଖି ତୁଏଂ ମନେ
ସତେ ପ୍ରାବୃଟ ନବଯାଇଁ
ସରସେ
ଶମ୍ବରଧର ଦର୍ବାବର
ପ୍ରମତ ମର୍ଦ୍ଦଳ ବଜାଇ ପ୍ରବଳ
ବିଜୁଳି ପତାକା ଅମ୍ବର । ୧୦ ।
ଶାଣ ମାର୍ଜଣି ବରଷା ଧାର ଧାର
ଶଚୀଶ କୋଦଣ୍ଡ ଦଣ୍ଡ ଯେ
ସମୀରଣ ଗତ ବଳେ ରସବତୀ
ଖୋଜୁଛୁ ଦେବାକୁ ଦଣ୍ଡ ଯେ
ସଜନି
ସୁମନା-ବିରହୀଗଣଙ୍କୁ
ସବୁ ଯାଉ ଜୀବ ନହେଉ ସମ୍ଭବ
ଜୀବନେ ରସିକ ଜନଙ୍କୁ । ୧୧ ।
ସିଂହିକା ନନ୍ଦନ ପର ଏହୁ କାଳ
ସୂର୍ଯ୍ୟ ପରାଗ କି ହେଲଣି
ସତେ କି ବିରହୀ— ଗଣଚନ୍ଦ୍ରା-ତଟେ
ଝାସ ଦେବାର ହୋଇଲଣି
ସଜନି
ସୁମନେଷୁ ବିପ୍ରସମରେ
ସୁହାସୀ-ଜୀବନ ଧନ-ଦାନ ଦେନ
ଭାବ ଭାବୁକ-ଜନସ୍ୱନରେ । ୧୨ ।
—ଶଚୈତନ୍ୟସଲକ୍ଷ୍ମୀ—

Digitized by srujanika@gmail.com

# ସୀତା ପ୍ରେମ ତରଙ୍ଗିଣୀ

ଶିବଙ୍କ ଜାଗରେ                    ରହୁ ଉଜାଗରେ
ବଞ୍ଚୁ କ କୈଳାସ ନଗରେ
ସୁରଧୁନୀ ସୂର୍ଯ୍ୟ—                    ନନ୍ଦନା ସଙ୍ଗମେ
ଝାସିଣ ଥିଲ ପ୍ରୟାଗରେ
ସେଲାଗି
ସୁହାସି, ତୋ ସଙ୍ଗ ଲଭିବରେ
ସନମତ ମୋର                    ଏ ଦୁର୍ଦ୍ଦିନ ଘୋର
ସ୍ଥିର ହୋଇଛୁ ବାନ୍ଧବରେ । ୧୩ ।
ଶମ୍ଭୁ ତ୍ର୍ୟମ୍ବକ କ                    କରବରେ ରଙ୍ଗ—
ରତନ ମୋ ଅଙ୍କ ଶୟନା
ସ୍ତନ ଶୈଳ ଦୁର୍ଗ                    ଭର୍ଗ—ମୋହନରେ
ସ୍ୱର୍ଗ ବଢ଼ୁତ ଦେବ ସିନା
ସଜନ
ସୁମନେଷୁ ଯିବ ହାରରେ
ସାଜ ଦେବ ଭାରୀ—                    ନିତମ୍ବ ଶୋଭନ
ଧାନୁକୀ ପଣ ତାହାବଟରେ । ୧୪ ।
ଶୁଭବାର ଧୀର—                    ହୀରକ ତୁମ୍ବର
ସମର ସମ୍ଭାର ଏହିକ
ଶର ଗୃପ ଥାଉ                    ଶ୍ରୀକର ଯୁଗଳେ
ଲକ୍ଷବାର ହେଲା କାହିଁକି
ଶୁଣି ଟେ
ସରସେ ହରଷେ ରାଘବ
ସୁରତ ବତ୍ସଳା                    ମୃତ ମୋହନାରେ
ଭାସିଲେ ନରଣି ଅଗ୍ରବ । ୧୫ ।
—ଶହେପଅଗୃଳଶି—

Digitized by srujanika@gmail.com

ସୀତା ପ୍ରେମ ତରଙ୍ଗିଣୀ

ଶରଣ ସିନା ଭଣ— ରଣ ମୋହନ,
ସବଳର ବାହୁ ଛାଇରେ
ସହ ମହାବୀର ବୋଲଇ ପାରୁ ତୁ
ଶରୀରେ ଯା ଅଛୁ ବହିରେ
ସଜନ

ଶ୍ରୀମୁଖରେ ନାଶାମଣିଟି
ଶ୍ରୀପଦେ ଦଳିଛୁ ବ୍ରହ୍ମା ତାତ ପରି
ବକ୍ଷେ ସଦାଶିବ ଅଣିଛି । ୧୬ ।
ଶୁଣି ହସି ହସି ପ୍ରେମ ମଦାଳସୀ
କୋଳ କଲେ ରଘୁନନ୍ଦନ
ସରସେ ହରଷେ ଭାଷେ ସତୀ ସୁତ—
ବାହନ, ଗ୍ରନ୍ଥକାର ସ୍ଥାନ
ସୁଜନେ
ସତର ପଦରେ ସତ୍ୱର
ସରିଲାଟି ସୁଧା ମାଦକରୁ ବଳ
ମଧୁର ବରଷା ଭଦ୍ୱାର । ୧୭ ।

———

— ଶତେହେଛସ୍ଥାଳଶୀ—

Digitized by srujanika@gmail.com

# ସର୍ଗ ପନ୍ଦର

ରାଗ—ବଙ୍ଗଳାଶ୍ରୀ

**—ଶରତ ଓ ହେମନ୍ତ ବର୍ଣ୍ଣନା—**

ସୁଦନ୍ତୀ ଦନ୍ତ ପଲଙ୍କେ ରଖି ଅଙ୍କେ
ଶଙ୍କର ମୋହନା ଧନୀ
ଶ୍ରୀରାମ ରାମ ରାମଚନ୍ଦ୍ର ମୁଖୀଙ୍କ
କହେ ହୁଅ ଅବଧାନୀ । ୧ ।

ଶରତ ଶୋଭାକୁ ଅରତ ନୋହି ଗୋ
ଦେଖ ଦେଖ ନେବ ପଥ
ସମ୍ଭବ ଏ ଭବ ପରବେ ବିଭବ—
ଦାମିନୀ କାଳ ବିଗତ । ୨ ।

ସୁରଜ୍ୟେଷ୍ଠ ସମ ହେଲଣି ସୁଷମ
ଭୁବନ ନିର୍ମଳକାରୀ
ସୁମନା ହସାଇ ମାନସ ରସାଇ
ପୀତବାସ ଗିରଧାରୀ । ୩ ।

---

୧—ସୁଦନ୍ତୀ ଦନ୍ତପଲଙ୍କେ-ଉତ୍ତମ ହାତୀ ଦାନ୍ତ ପଲଙ୍କ ଉପରେ । ଶ୍ରୀରାମ ରାମ-ଲକ୍ଷଣ ବନ୍ତ ଓ ମନୋହର ରାମଚନ୍ଦ୍ର;ରାମଚନ୍ଦ୍ରମୁଖୀ-ମନୋହର ଚନ୍ଦ୍ର ମୁଖୀ ଅର୍ଥାତ୍ ପୂର୍ଣ୍ଣଚନ୍ଦ୍ର ମୁଖୀ ।

୨—ଭବ-ମହାଦେବ; କାଳ-ମୃତ୍ୟୁ ଓ ଦୁର୍ଦ୍ଦିନ ବା ବର୍ଷାକାଳ ।

୩—ସୁରଜ୍ୟେଷ୍ଠ-ବ୍ରହ୍ମା; ଭୁବନ-ଜଳ, ପୃଥିବୀ; ସୁମନା-ଗୋପ ସ୍ତ୍ରୀ, ପୁଷ୍ପ;ପୀତବାସ ଗିରିଧାରୀ-ଶ୍ରୀକୃଷ୍ଣ ।

—ଶହେସତରୁଳଣି—

Digitized by srujanika@gmail.com

ସୁନିର୍ମଳ କରେ ଅମ୍ବର ଦେଖରେ
ରଜକ, ସ୍ତବକସ୍ତନା
ଶବର ବର ଘନର କୃଷ୍ଣସାର—
ନିଧନେ କୁନ୍ଦ ରଦନା । ୪ ।
ସୁମଧ୍ୟା କେଶରୀ ସଙ୍ଗତରେ ସର
ଘନାଘନ ହୁଏ ଧନ
ସୁନ୍ଦରରେ ନବ କନ୍ୟା ଅଲଙ୍ଗନେ
ବର ଶୋଭା ବର୍ଦ୍ଧନ । ୫ ।
ସେ ତ ବିଶାରଦ ରେ ନବନୀରଦ—
କୁନ୍ତଳା କରନ୍ତି ଲୀଳା
ସତେ ଯେ ପୁଷ୍କରେ ତରଣୀ ଗତିରେ
ସୁରସ ହାସ୍ୟ ଛଳିଲା । ୬ ।
ଶୈବଳିନୀ ତଟ ପଠାରେ ପ୍ରକଟ
କାଶ ସୁମନସ ରାଶି
ଶୁକ୍ଳକେଶୀ ଯୋଷା ଧରଣୀ ସହସା
ଦେଲା ବର୍ଷା ଶେଷେ ଆସି । ୭ ।

---

୪—ରଜକ-ଧୋବା; ଅମ୍ବର-ଲୁଗା, ଆକାଶ; ଶବରବର-ଶବର ଶ୍ରେଷ୍ଠ, ବ୍ୟାଧ; ଘନର-ମେଘର, ବସ୍ତ୍ରତନ୍ତୁରେ; କୃଷ୍ଣସାର-କୃଷ୍ଣିମା, କାଳିମା; ମୃଗ ବିଶେଷ ।

୫—ଘନାଘନ-ମତ୍ତହସ୍ତୀ, ମେଘାଡମ୍ବର, ନବକନ୍ୟା-ନୂତନ କନ୍ୟା କନ୍ୟାମାସ;ବର ଶୋଭା-ଶ୍ରେଷ୍ଠ ଶୋଭା, କୌଣସି ସୌନ୍ଦର୍ଯ୍ୟ ।

୬—ବିଶାରଦ-କେତକ (ବିଶାର ଗଣ୍ଡକା ମଧ୍ୟା-ଅମର) ପୁଷ୍କର-ଆକାଶ; ଜଳ; ତରଣୀ-ସୂର୍ଯ୍ୟ, ନୌକା ।

୭—ଶୈବଳିନୀ-ନଦୀ; ।

—ଶରଦ୍ ଅଠପ୍ରଲିଣି—

Digitized by srujanika@gmail.com

## ସୀତା ପ୍ରେମ ତରଙ୍ଗିଣୀ

ସରୋବରରେ ଫୁଟେ ତାର୍ ବାସେ ଘୁଟେ
ମଧୁ ମାଦକରେ ରସି
ସରୋଜ କୁମୁଦ ପାଶେ ଅତ ମୋଦ
ମିଳନ୍ଦରେ ଗୃନ୍ଥହାସି । ୮ ।

ସ୍ୱଭାବେ ତ ସିତ ବସନେ ଅବୃତ
ହେଲ କବା ଧରାଗଣୀ
ଶେଫାଳି ଗଣିକା ହାସ ଛଳେ ଏକା
ମାନସେ ଭାବନା ପୁଣି । ୯ ।

ସୁନୀଳ ଅମ୍ବରେ ସିତ ନୀରଧରେ
ଗତ ଦେଖି ଗୃନ୍ଥହାସି,
ସେ ପ୍ରକୃତ ରାଣୀ କ ସେ ସିନ୍ଧୁ ପାଣି
ଗ୍ଲନ୍ତି ଦେଲ ପୋଛରାଶି । ୧୦ ।

ସଜନି, ରଜନୀକର ମନୋହର
ତଳ ନୀକର କ ଲୋଡ଼ା
ସିନ୍ଧୁ ଅଦ୍ରୁମ ହେଲଣି ସୁଷମ
ସୁମନରେ ଥୋଡ଼ା ଥୋଡ଼ା । ୧୧ ।

ସୁମନ ଯେ ତାର ଚେଣ୍ଡୁ ଶଣ୍ଡର
ବଙ୍କିମ ଛବି କ ଅଣେ
ସୁର ଜାବା ନବ ଧନୁକୁ ସମ୍ଭବ
କରୁଛନ୍ତି ମାଧବ ଠାଣେ । ୧୨ ।

---

୮—ମିଳନ୍ଦ-ଭ୍ରମର ।
୯—ସିତ ବସନ-ଶୁକ୍ଳଲୁଗା; ଶେଫାଳି-ଗଙ୍ଗଶିଉଳି; ଗଣିକା-ଯୁଇ ।
୧୦—ରଜନୀକର-ଚନ୍ଦ୍ର, କର୍ପୂର । ସିନ୍ଧୁ ଅଦ୍ରୁମ-ଅଗସ୍ତି ।

—ଶରହୃଅଣଣାଣ—

ଶ୍ୟାମ ହରିତାଳି ପଥେ ଅରେ ବାଳି
ସୁବର୍ଣ୍ଣ ତାରକା ତୁଲ
ସର୍ବଦା ପ୍ରଦୋଷେ ଫୁଟୁଛୁ ହରଷେ
ଜହ୍ନିଫୁଲ ହୋଇ ମୂଳ । ୧୩ ।

ଶର୍ବରୀରେ ବରବରନାରେ ମୋର
ଚନ୍ଦ୍ର ତାରକାନିବହ
ଶୁକ୍ଳ ମୋତି ପନ୍ତି ମାଳାକି ପ୍ରକୃତ
ଗୁନ୍ଥୁଛୁ ହୁଏ ସନ୍ଦେହ । ୧୪ ।

ସହି ଏଅନ୍ତେ ହେମନ୍ତ ଅରେ ମତ୍ତ—
ବାରଣଗତି ଚତୁର ।
ସ୍ନେହ ତେଜାଇ ଅନଳକୁ ଧ୍ୟାଇ
ଅନଳେ କରେ ଅତୁର । ୧୫ ।

ସମ୍ଭବ ନବବଧୂ ପରି ସେ ସିଦ୍ଧି—
ଦାମ୍ପିନୀ ବଶୁଳିଦେହା
ସୃଷ୍ଟି କି ଦୃଷ୍ଟି ପଡ଼ନ୍ତେ ହେଲ କୃଷ୍ଟି
ହେମନ୍ତ ଯେମନ୍ତ ଅହା । ୧୬ ।

ସଦନେ ସଦନେ ହସନ୍ତୀ ହସନ୍ତ
ହସନ୍ତୀରେ ଜନେ ରତ
ସତତ ବାସେ ହାସେ ରସେ ରସାଇ
ଜନେ ଯୁବତୀ ସରତ । ୧୭ ।

---

୧୭—ହସନ୍ତୀ-ଉନ୍ମେଇ, ବାଲମୁର୍ଦ୍ଧିକରଣ, ପ୍ରକାଶ ହେବା ।



Digitized by srujanika@gmail.com

ଶୀତଳ ଚନ୍ଦ୍ର ଇନ୍ଦ୍ର ଭୂତଧାସ୍ଥିନ,
ମନ୍ଦର ସ୍ତନାରେ ଶୁଣ
ସୁର୍ଯ୍ୟଠାରେ ଧୈର୍ଯ୍ୟଭଙ୍ଗିନ ଦେଲାରେ
ହେମନ୍ତର ଏହୁ ଗୁଣ । ୧୮ ।

ସୁଧାନ ଦନ ହେଲାରେ ପୀନସ୍ତନୀ
ମୀନ ନୟନା ପଣ୍ଡିତା
ଶବଂସ୍ତ ଦଲୀଶୋଭନ, କଳନ୍ତୁହେ
ଦୀର୍ଘକୁ ରସ ମଣ୍ଡିତା । ୧୯ ।

ସୁକାଞ୍ଚନ ଗୋସ୍ତ ରୋମାଞ୍ଚ ଅଙ୍କୁର
ଶୀତେ ଶୀତକରମୁଖୀ
ସଜାଡ଼ି ଯୋଡ଼ି ଯୋଡ଼କୁ ଘୋଡ଼ି ହେଲେ
ନବଢ଼େ ଯେ ଜନ ସୁଖୀ । ୨୦ ।

ଶରଣ ଏକାଳେ ଚରଣ ତଳରେ
ବାରଣଗମନାଙ୍କର
ସାଥିରେ ରଖି ସ୍ତୁତକ ସ୍ତୁତଦେଇ
ରାତି ରତେ ମାତବାର । ୨୧ ।

ଶରଦ ନୀରଦ କେଶାରେ ଦ୍ୱିରଦ—
ଗମନେ ଏ ମୋର ମତ
ସୁବରଦ ବଦ କରନାହିଁ ମଦ—
ମତ୍ତ ହେଲା ରତପଥ । ୨୨ ।

ସୁଜାଣ ଅଶୀତ ପଣତ କାନକ
ଦାମୀ ହୁଅ ମୋର ଅଙ୍ଗେ
ସରଳେ ମୋ ଗଳେ ଶଙ୍ଖ ଅବହେଲ
କର ବେକ ଅତ ରଙ୍ଗେ । ୨୩ ।

—ଶହେଏକାବନ—

Digitized by srujanika@gmail.com

ଶୁଣି ବାଣୀ ଜାଣିବାର ଚୂଡ଼ାମଣି
ରମଣୀ ଭଣିଲେ ଏହା
ସତ ସତ ସନମତ ସମ୍ଭବକ
ଚନ୍ଦ୍ର ଗୁଣେ କାହିଁ ରାହା । ୨୪ ।
ସ୍ନେହେ ରସି ମିଶାମିଶି ହେଲେ ବେନି
ତୋଷି ବେନି ବେନି ମନ
ସୀତା ଶ୍ରୀରାମର ମିଳନ ମଧୁର
ଦେଖୁ ଏ ପାପ ନୟନ । ୨୫ ।
ସଦା ମତ୍ତ ମତ୍ତକାଶିନୀ ହାସିନୀ
ବୟସ୍ୟା ବୟ ସାଗରେ
ଶରଣ ମାଗୁଛୁ କାରଣ ହେବାକୁ
ଚରଣେ ଅତ ବେଗରେ । ୨୬ ।
ଶୁଣାଅ ନାହିଁ ଜଣାଉଁ ଅଛୁ ମୁହିଁ
ଓଡ଼ିଶା ଲୋକଙ୍କର ବାଣୀ
ଶ୍ରୀଚରଣ-ଅରବିନ୍ଦ-ମକରନ୍ଦ
ଦନ୍ତେ ତୁଣ୍ଡେ ଦିଅ ଆଣି । ୨୭ ।
ସୁଖର ନୁହେ ମୁଖରଙ୍କର ଚିର
ଦୁଃଖର ଏହୁ କାରଣ
ସୁତୀକ୍ଷ୍ଣ ନାରାଜଧାରି ମୋ ଗରଜ
ନକର ହେ ଅକାରଣ । ୨୮ ।
ଶଙ୍କର ତାରକ ଭୟ-ନିବାରକ
ଶ୍ରୀରାମ ତାରକ କେହୁ
ଶ୍ରୀମୁଖେ ଦୁଃଖେ ସୁଖେ ଅବା ଅଲକ୍ଷେ
ବୋଲିବାର ଶୁଣା ନାହିଁ । ୨୯ ।

—ଶଢ଼େଇବାଅନ—

Digitized by srujanika@gmail.com

## ସୀତା ପ୍ରେମ ତରଙ୍ଗିଣୀ

ସୀତା ବଲ୍ଲଭ ଦୁର୍ଲଭେ କ ସୁଲଭ
ଲଭ ତବ ନାମ ମାଳା
ଶରୀରେ ଛାପ ଦେଇ ପାପ ଲେପକୁ
ଅମାଡ ପାପ ଯେ କଲା । ୩୦ ।
ସେହି ପାଷଣ୍ଡ ଭଣ୍ଡେ ଅଜ ଦାଣ୍ଡେ ତ
ଭକତ ରକତ ମୁଖୀ
ଶକତ ନୋହି ସେ ବ୍ୟକତ କରନ୍ତି
ଶାସ୍ତ୍ରରୀତ କେତେ ଯୋଖି । ୩୧ ।
ଶୁଣ ରେ ମାନସ ଗୁଣ ସେ ସାରସ—
ଲପନ ଦବ୍ୟ–ମାଧୁରୀ
ସୁଗତ ଜଗତୀ ତଳେ ତଳେ ନାହିଁ
ତହିଁଟି ରହିଛୁ ପୁରି । ୩୨ ।
ସୁତ–ବନତାର ଶ୍ରବଣ ଯୁଗର
ସେହି ଦବ୍ୟ–ଅବତଂସ
ସଦା ଯୋଗୀବୃନ୍ଦ ପରମ ଆନନ୍ଦ—
ଦାୟକ ପରମହଂସ । ୩୩ ।
ସଂସାର-ସାଗର ଅପାରର ପାର
ହେବା ତାର ବର୍ତ୍ତ ଦୁଇ
ସୋମ ସୂର୍ଯ୍ୟ ଧୈର୍ଯ୍ୟ କରି ମନେ ହେଜ
କଳି–କଲମଷ ପାଇଁ । ୩୪ ।
ସକଳ ବେଳାରେ ହେଳା ତୁ ନକର
ଭେଳାର ସେ କର୍ଣ୍ଣଧାର
ଶୟନେ ସ୍ୱପନେ ଗମନେ ଅଶନେ
ପାଅ ନାମାମୃତ ସାର । ୩୫ ।

—ଶହେତେପନ—

Digitized by srujanika@gmail.com

ସରବ ଅବୃଷ୍ଟି ସୁଧାମୟ ସୃଷ୍ଟି
ସେହୁ ବଳେ ପାରେ ଧୋଇ
ସେ ବଳରେ ମୂକ ହୁଏ ବାବଦୁକ
ସ୍ମୃତି ଶାସ୍ତ୍ର ବାଣୀ କହୁ । ୩୬ ।

ସେ ରଘୁନନ୍ଦନ ନାମଟି ଚନ୍ଦନ
ପରି ବୋଲି ହୋଇ ନିତ
ସରିଯିବ ଦ୍ୱନ୍ଦ ଦୀନବନ୍ଧୁ ସ୍ୱୀନ
ଭ୍ରାନ୍ତିଟିକେ କରୁଣା ମତ । ୩୭ ।

---

# ସର୍ଗ ଷୋହଳ

ରାଗ–କଳସା

## —ଶୀତ ବର୍ଣ୍ଣନା ଓ ଗ୍ରନ୍ଥ ସମାପ୍ତି—

ସାହିତ୍ୟ ସଙ୍ଗୀତ ରସବଚକ୍ଷଣ ଗଣ
ସୁବୁଦ୍ଧି ଏ ଋତୁ ବର୍ଣ୍ଣନାକୁ ହେତୁ ଅଣ । ୧ ।

ସୁରଧୁନୀ ଯମୁନା ସଙ୍ଗମ ପରି ଏହି
ସତ ମୂର୍ଖ–ପାପୀଙ୍କି ଯେ ପୁଣ୍ୟଦେହ ଦେଇ । ୨ ।

ସମାଗତ ହେଲ ରେ ସଜନ ଏବେ ଶୀତ
ଶିତକର ମୁଖି, ଦନ୍ତଚ୍ୟୁତେ ବେନି ଅର୍ଥ । ୩ ।

—ଶହେଚଉବନ—

Digitized by srujanika@gmail.com

## ଦତ୍ତାକ୍ଷର

(ତ୍ରୁ) ସାର ଋତୁ ପରବେଶ ହୋଇଲା ରସାରେ
(ପ୍ର) ସବଲ ଧନର୍ଦ୍ଧ—ବଶୁ ଶୀତ—ଘାତ ଖରେ । ୪ ।
(ଅ) ଶୁଭଗ ପ୍ରକୃତ ଶୁଭେ ମରୁତ ପ୍ରସରେ
(ଅ) ସୁଖୀ ଖା—ସଜ ବଯ଼ଜ ଚ୍ୟୁତ ପଲ୍ଲବରେ । ୫ ।

## ଚ୍ୟୁତାକ୍ଷର

ସ କାମେ ଶରଣ ଘନକଘନା ଚରଣ
ସୁ ଶୀତଳ ବାତେ ଜଳ୍ପିତ ଯେଣୁ ମନ । ୬ ।
ସୁ ରମଣୀ ନଣିଦନେ ତନୁ ଅବଦଶେ
ସୁ ରତ ବିରତ ମତ ନୁହନ୍ତି ଜନେ । ୭ ।
ସଂ ଯୋଗୀ ଭବନେ ଏବେ ହସନ୍ତି ହସନ୍ତି
ସଂ ଯୋଗୀ ଅତନୁ ଶୀତେ ସୁଖବେ ହସନ୍ତି । ୮ ।
ସୁ ରସ ନୀତି ବଦନ ପରଦେଶୀ କାନ୍ତ
ସ ରସେଅନାଇଁ ଭାବେ ମରୁ ରତ ନାଥ । ୯ ।
ଶା ରଙ୍ଗେ ରଙ୍ଗରେ ମତ୍ତ ହୋଇ କୋଳାକୋଳି
ସୁ ସୀତା ବାଣୀ ବଚନା ଅରେ ପ୍ରିୟ ଅଳି । ୧୦ ।
ଶୀତଦନେ ଅରେ ଶତ୍ରୁବମୋହନା ମୋର
ସାରିବା ରଜନୀ ଅଙ୍ଗେ ଜଡ଼ି ପରସ୍ପର । ୧୧ ।
ସତେ ଭେଟେ ମତେ ଲଗାଲଗି ଥିବା ହୋଇ
ସୁମନଶର କାତରେ ତରଳାକ୍ଷି, ସହି । ୧୨ ।
ସ୍ମରଣ ନାମେ ବରଣ ବପ୍ରେ ବିପଦରେ
ସ୍ତବ କବଚ ବଚନେ ସନ୍ତୋଷି ବଭୂତରେ । ୧୩ ।

—ଶହେପଞ୍ଚାବନ—

Digitized by srujanika@gmail.com

ସେ ଲଗି ଲଭିବା କାମ ଦେବ ପୂଜା ମନ୍ତ୍ରେ
ସୁମୋହନୀ ମୋହ ଦେବା ସୁମୋହନ ଛନ୍ଦେ । ୧୪ ।

ସୁପୀଠ ଜାନୁ–ବଇଠି ଠିକ ରସାଳସା
ସ୍ତନ-ମାତୁଲଙ୍ଗ ଫଳ କରକ ସରସା । ୧୫ ।

ସହ ଦନ୍ତପଂକ୍ତି ତୋର; ଏ ପୂଜା ସମ୍ଭାର
ସୁଫଳ ଫଳାବ ଋଦ୍ଧିଦାତ୍ରୀ ବୁଦ୍ଧି ସାର । ୧୬ ।

ସୁମନ ଅଞ୍ଜଳି ତର କୋକନଦାବଳୀ
ସହଜେ ଚମ୍ପା କଳିରୁ ବଳନ୍ତୁ ଅଙ୍ଗୁଳି । ୧୭ ।

ସୁନୀଳ ଉତ୍ପଳ ନେତ୍ର ଯୁଗଳ ଅବର
ସଙ୍ଗେ ତିଳ ସୁମନସ୍ ନାସିକା–ସୁନ୍ଦର । ୧୮ ।

ଷୋହଳ ସୁମନେ ରେ କୋହଳ ଅଙ୍ଗୀ ତୋର
ସରସେ ପୁଷ୍ପ ଅଞ୍ଜଳି ଦେବା ଫୁଲଶର । ୧୯ ।

ଶ୍ରବଣ ତଟ ତାଟଙ୍କ ପ୍ରକଟ ଅଳକ
ଷବଧିରେ ଧୀରେ ବନ୍ଦାଇବା ରତ ପତ । ୨୦ ।

ଈଶ୍ୱର ରକ୍ଷଣେ ଯେ ମଦନ ମନ୍ତ୍ର ଜପି
ସାରିବା ଏ ତାପ ଲେପ କରଣେ ଅଦ୍ୟାପି । ୨୧ ।

ସହ ରେ ଗୁଣିବ ଏବେ ଶ୍ରୀରାମ କବଚ
ସୁଲକ୍ଷଣା ମହୀରେ ଏ ନୁହଇ କବଚ । ୨୨ ।

ଶ୍ରୀଶ୍ରୀବାତ୍ସ୍ୟାୟନ ଋଷି ଅନୁଷ୍ଟୁପ ଛନ୍ଦ
ସୁରତ ବୀଜ ଯେ କାମ ଦେବତାଙ୍କ ଦନ୍ଦ । ୨୩ ।

ଶମ୍ବର ରକ୍ଷଣେ ଶୀତ ଦନେ ହୁଅ ସାହା
ଶଂଖ ବସୁଳା ନୋହୁ ହା ହୁତାଶ ଅହା । ୨୪ ।

—ଶହେଛପନ—

Digitized by srujanika@gmail.com

# ସୀତା ପ୍ରେମ ତରଙ୍ଗିଣୀ

ସୁଗନ୍ଧ ଭ୍ରମର କେଶ ଶିର ରକ୍ଷା କର
ସୁରେଖ ମୁଖମଣ୍ଡଳକୁ ଚନ୍ଦ୍ରମୁଖୀ ମୋର । ୨୫ ।
ସୁରସିକା ଚୂଡ଼ାମଣି ନାସିକା ଦୋଷଟରେ
ସଖି ଅକ୍ଷି ଯୁଗ ରଖ ମୀନାକ୍ଷୀ ଲୋଷଟରେ । ୨୬ ।
ଶମ୍ଭାଜିତ ଭଙ୍ଗୀରେ ଇଙ୍ଗିତେ ଅଙ୍ଗୀକାର
ସୁକଟାକ୍ଷ ପ୍ରକାଶିନୀ ଭ୍ରୂଭଙ୍ଗୀ ମୋହକର । ୨୭ ।
ସୁଧାବଚନା ଶୋଚନା କରିବ କାହିଁକି ?
ସ୍ମିତେ ଦନ୍ତେ ତୁଣ୍ଡେ ରକ୍ଷା କରିବା ପାଇଁ କି ? ୨୮ ।
ସରୋଜନାଳ କୋମଳ ବାହୁ ଶୋଭନାରେ
ସ୍ମରଣ କରୁଛୁ ବାହୁ ଯୁଗ ସେହୁ ନାରେ । ୨୯ ।
ସ୍ୱର୍ଣ୍ଣଘଟନବକ୍ଷେ ବକ୍ଷେ ପ୍ରତ୍ୟକ୍ଷରେ ରଖ
ସୁପୀନସ୍ତନାରେ ସ୍ତନ ସେହୁ ଯୋଗେ ଲକ୍ଷ । ୩୦ ।
ସୁଲଂଘନେ ଜଘନେ ଏ ଘେନେ ନାମ ତୋର
ସୁକଟି କଟିକି ସଂକଟୁ ରକ୍ଷା କର । ୩୧ ।
ଶ୍ରୀପଦ୍ମପାଦ ଶୋଭନା ଅଙ୍ଗନା ବର ଯେ
ଶରଣି ରଖିବ ପଦ ଯୁଗଳ ମୋର ଯେ । ୩୨ ।
ଶସ୍ତନେ ହାତୀଗମନା ଛାଡ଼ ପରେ ରହ
ସ୍ୱପ୍ନେ ସ୍ୱପ୍ନାତୀତ ଶୋଭାବତୀ ଦୃଶ୍ୟ ହୁଅ । ୩୩ ।
ସୁଭୋଜନେ ରସବତୀ ମହାରସ ଦାୟୀ
ଶୂନ୍ୟେ ଭୂତଳ ପାତାଳେ ପଞ୍ଚପ୍ରାଣ ସହ । ୩୪ ।
ସାକ୍ଷାତେ ତୁ ଦେବୀ ଆଦ୍ୟା ସଂକଟ ତାରିଣୀ
ସୁର ଅସୁର ନରର ବିପଦ-ବାରଣୀ । ୩୫ ।
ଶୁଣି ଗୁଣବତୀ ହସି କଲେ ଆଲିଙ୍ଗନ
ସତେ କି ପରମ ଶୋଭା ଯୁଗଳ ମିଳନ । ୩୬ ।

—ଶହେସତାବନ—

Digitized by srujanika@gmail.com

## — ଗ୍ରନ୍ଥ ସମାପ୍ତି —

ସୀତା ପ୍ରେମ ତରଙ୍ଗିଣୀ ସୁମଧୁର ଛନ୍ଦ
ସୁରସିକ ମାନସ-ଚକୋର ପୂର୍ଣ୍ଣ ଚନ୍ଦ । ୩୭ ।
ସୁଖେ ଚରମ ଶିଖସ୍ତି ଶିଖେ ଅସ୍ତୁ ଏ
ଷୋଳକଳା ଏ ଷୋଡ଼ଶ ଛନ୍ଦ ସୁଧା ପ୍ରାପ୍ୟେ । ୩୮ ।
ଶରଣାଗତପାଳକ ଶ୍ରୀପଦ-ସାରସ
ସ୍ମରଣ ମୋ ସଦା ହେଉ ମାଗେ ଅହର୍ନିଶ । ୩୯ ।
ଶାଣ ବାଣଧର ମୋତେ କରାଇବ ଦାସ
ସାଧବ ଯେ ସ୍ମରେ ସଦା ତୁମ୍ଭ ଦିବ୍ୟ ଯଶ । ୪୦ ।
ସୁପଣ୍ଡିତ ଜନଙ୍କୁ ମୋ ପ୍ରଣାମ ଅଶେଷ
ସହଜେ ମୂର୍ଖଙ୍କୁ ଭୟ ଲଭେ ହୃଦ ଦେଶ ୪୧ ।
ସୁମଧୁର ନୁହେ କାମ୍ବ ଦେଲେ ଯେତେ ରସ
ସିତ ହେବ କି ଅଙ୍ଗାର ଶତଧୌତେ କଣ । ୪୨ ।
ସୁଗନ୍ଧ ଲସୁନ କାହୁଁ ଘୃତପାକ ରସେ
ସହଜେ ତ ହଳାହଳ ତାଙ୍କ ମୁଖେ ବସେ । ୪୩ ।
ଶତ ଜନ୍ମ ହେଲେ କି ସଂସ୍କାର ହେବ କାହିଁ ?
ସୁକବିତ୍ୱ ଛନ୍ଦ ରସ ବୁଝିବାର ନାହିଁ । ୪୪ ।
ସୁଧା ବୋଇଲେ ତ ସୁଦ୍ଧା ବିଷ କରେ ଜ୍ଞାନ
ସତ୍ୱର କି ଏ ଜନେ ଭଜନେ ମୋର ଧନ ? ୪୫ ।
ଶ୍ୟାମଳ ସୁନ୍ଦର ସତେ ଏ ଅଙ୍କ କରିବ
ସୀତାପାଶେ ତୁମ୍ଭ ଛବି ନେନେ ଦଶୁଥିବ । ୪୬ ।
ଶରୀରେ ମୋ ସଦାଥିବ ନବ ଯଉବନ
ସୁ କବି ଭଞ୍ଜ କବିତା ରଞ୍ଜୁଥିବ ମନ । ୪୭ ।

—ଶହେଅଠାବନ—

Digitized by srujanika@gmail.com

ସାମନ୍ତ ସିଂହାର ଗୀତ ଗାଇଣ ଶୀତ୍କାର
ଶରୀରେ ମୋ ଜାତ ହେଉ ଏହି ଅଙ୍କୀ କର । ୪୮ ।
ଶ୍ରାବଣ ପର୍ଯ୍ୟନ୍ତେ ରସ ବରଷୁ ହରଷେ
ସେହି କବିସୂର୍ଯ୍ୟ ଗୀତ ମୋର ହୃଦାଦେଶେ । ୪୯ ।
ସନ୍ତୁଷ୍ଟେ ମୁଁ ପୀନକୃଷ୍ଣ ରସ କରେ ପାନ
ସେହି ଯଦୁମଣି ବାଣୀ ଶୁଣୁ ଥାଉ କାନ । ୫୦ ।
ସମ୍ଭବ ହେବ କି ଥରେ ଜୟଦେବଙ୍କର
ସମୁଜ୍ଜ୍ୱଳ ସୁଧାଗୀତ ଉଜ୍ଜ୍ୱଳ ଶୃଙ୍ଗାର । ୫୧ ।
ସଂକଳ୍ପ ଯାଉତ ମୋର ଅଳପ ନୁହଇ
ସାକ୍ଷାତ କଳପ ବୃକ୍ଷ ନ ଦେବ କି ଗୁଇ । ୫୨ ।
ସୁଧୀ-କରେ ଦଅ ମୋର ଏ ସରସ ଗୀତ
ସୁକବି ଜାଣିବେ କବିତାର ଗତ ସ୍ଥିତ । ୫୩ ।
ସହଜେ ଅକର୍ମଶୀଳା କି ମହା କଠିନ
ଶୁଣିବେ ନାହିଁ ଏହାକୁ ଅପ୍ରବୀଣ ଜନ । ୫୪ ।
ସାମନ୍ତ ହେ କୀଠ ମୁଖେ ନଦଅ ଏହାକୁ
ସୁ ବଦତ ହେଉ ମାଗେ ଏହି ଅଭୟକୁ । ୫୫ ।
ଶତ ପାଞ୍ଚ ଉଦ୍ୟାନରେ ସିନ୍ଧୁ ଏଥି ପଦ
ସୁ ବର୍ଗୁ ର କର ଥରେ ମଣ୍ଡରେ କୋବିଦ । ୫୬ ।
ଶକାବଦ ଅଠରଶ ଶତଷଠି ହୁଏ
ସୀତାରାମ ସ୍ୱବଦାନ ଗ୍ରନ୍ଥକାର କହେ । ୫୭ ।

---

**ସମାପ୍ତ**

---

ବ୍ରହ୍ମପୁର ଷ୍ଟୋର ପ୍ରେସ୍‌ରେ ଶ୍ରୀ ଦାମୋଦର ରଥଙ୍କ ଦ୍ୱାରା ମୁଦ୍ରିତ ।



Digitized by srujanika@gmail.com